# ଲଞ୍ଜାଇନସ୍‌ଙ୍କ
# ଉଦାତ୍ତ-ତତ୍ତ୍ୱ

ଡକ୍‌ଟର ବୈରାଗୀଚରଣ ଜେନା

# ଲଞ୍ଜାଇନସ୍‌ଙ୍କ ଉଦାତ୍ତ-ତତ୍ତ୍ୱ

ଅନୁବାଦ ଓ ଭୂମିକା

ଡକ୍ଟର ବୈରାଗୀଚରଣ ଜେନା

# ଲଂଜାଇନସ୍‌ଙ୍କ ଉଦାତ୍ତ-ତତ୍ତ୍ୱ

ଡକ୍ଟର ବେ ଗର୍ଗୀଚରଣ ଜେନା
ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଜ୍ୟୋତିବିହାର

ପ୍ରକାଶନ :
ପ୍ରଥମ ସଂସ୍କରଣ
ଜାନୁଆରୀ ୧୯୮୫

ପ୍ରକାଶିକା: ଶ୍ରୀମତୀ ସୁପ୍ରଭା ଜେନା (ସ୍ୱତ୍ୱାଧିକାରିଣୀ)
ଜ୍ୟୋତିବିହାର

ମୁଦ୍ରଣ
ତାରିଣୀ ପ୍ରିଣ୍ଟର୍ସ, ବୁର୍ଲା

ମୁଦ୍ରକ- ଶ୍ରୀ ଦାମୋଦର ଶୁକ୍ଳ

**ମୂଲ୍ୟ ପନ୍ଦର ଟଙ୍କା।**

# ଭୂମିକା

ଲଂଜାଇନସ୍‌ଙ୍କ ପରିଚୟ—

ଲଂଜାଇନସ୍ ପାଶ୍ଚାତ୍ୟ ଆଲୋଚକମାନଙ୍କ ମଧ୍ୟରେ ବିଶେଷ ମାନ୍ୟତାପ୍ରାପ୍ତ ଓ ପ୍ଲାଟୋ ଓ ଆରିଷ୍ଟୋଟଲ୍‌ଙ୍କ ପରେ ସର୍ବଶ୍ରେଷ୍ଠ ଗ୍ରୀକ୍ ସମାଲୋଚକ ରୂପେ ପରିଗଣିତ । ଆରିଷ୍ଟୋଟଲ୍‌ଙ୍କ ପ୍ରସିଦ୍ଧ ରଚନା 'କାବ୍ୟତତ୍ତ୍ୱ' ପରେ ତାଙ୍କର 'ଉଦାତ୍ତତତ୍ତ୍ୱ' ଦ୍ୱିତୀୟ ସ୍ଥାନ ଅଧିକାର କରେ । ପାଶ୍ଚାତ୍ୟ ସମାଲୋଚନା ଶାସ୍ତ୍ର ଇତିହାସରେ ଏହା ଏକ ମୌଳିକ ଗ୍ରନ୍ଥ ରୂପେ ବିବେଚିତ ହୁଏ । ଏଥିରେ ସେ ପ୍ରଥମ ରୋମାଣ୍ଟିକ୍ ସମାଲୋଚକ ରୂପେ ଦେଖା ଦେଇଛନ୍ତି । ପ୍ଲାଟୋ ଓ ଆରିଷ୍ଟୋଟଲ୍‌ଙ୍କଠାରୁ ସେ ସମ୍ପୂର୍ଣ୍ଣ ଭିନ୍ନ ସ୍ତରର ସମାଲୋଚକ । ଏହି ଗ୍ରନ୍ଥରେ ସେ ମୁଖ୍ୟତଃ ରୋମାଣ୍ଟିକତା ଦୃଷ୍ଟିକୋଣରୁ କାବ୍ୟର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଉପରେ ଆଲୋଚନା କରିଛନ୍ତି । ବିଶୁଦ୍ଧ ସାହିତ୍ୟ ତତ୍ତ୍ୱଠାରୁ ସାହିତ୍ୟର ନାନାବିଧ ବାସ୍ତବ ସମସ୍ୟା ଏଥିରେ ଆଲୋଚିତ ହୋଇଛି । ତେଣୁ ଅନେକେ ମନେ କରନ୍ତି, 'ଉଦାତ୍ତତତ୍ତ୍ୱ' ନାମରେ ଯେଉଁ ଗ୍ରନ୍ଥ ମିଳେ ତା ବୋଧହୁଏ ମୂଳ ଗ୍ରନ୍ଥର ଦ୍ୱିତୀୟ ଭାଗ ; ପ୍ରଥମ ଭାଗରେ ସମ୍ଭବତଃ ଦାର୍ଶନିକ ଦୃଷ୍ଟି-କୋଣରୁ ସାହିତ୍ୟତତ୍ତ୍ୱ ଆଲୋଚିତ ହୋଇଥିଲା ।

ଏହି ଗ୍ରନ୍ଥର ରଚନା କାଳ ଓ ଗ୍ରନ୍ଥକର୍ତ୍ତାଙ୍କ ପରିଚୟ ରହସ୍ୟାବୃତ ଓ ଅଜ୍ଞାତ । କୌଣସି ପ୍ରାଚୀନ ଲେଖକ ତାଙ୍କ ବିଷୟରେ ଉଲ୍ଲେଖ କରି ନାହାନ୍ତି । ତାଙ୍କୁ ସାଧାରଣତଃ ଲଂଜାଇନସ୍ ବୋଲି କୁହାଯାଏ । ଆଧୁନିକ ପାଠକମାନେ ୧୫୫୪ ମସିହାରେ ପ୍ରଥମେ ଏହି ଗ୍ରନ୍ଥ ସହିତ ପରିଚିତ ହେଲେ—ଏହାର ଲେଖକଙ୍କ ନାମ ଦିଆଯାଇଥିଲା ଡାଇଓନିସିୟସ୍ ଲଂଜାଇନସ୍ । ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ମତବାଦ ଗୃହୀତ ହୋଇ ଆସିଥିଲା । ପରେ ଏହି ଗ୍ରନ୍ଥକୁ ପାଲମିରର ରାଣୀ ଜେନୋବିୟାଙ୍କର

ପ୍ରସିଦ୍ଧ ମନ୍ତ୍ରୀ ଲଂଜାଇନସ୍‌ଙ୍କ କୃତି ରୂପେ ନିର୍ଦ୍ଧାରିତ କରିଥିଲା । ଏହି ସନ୍ଦର୍ଭର ରଚୟିତାଙ୍କ ସମ୍ବନ୍ଧରେ କିଛି ସ୍ଥିର କରି କହିବା ଅତି କଷ୍ଟକର ; କାରଣ ଦାଇଓନିସିୟୁସ୍ ବା ଲଂଜାଇନସ୍ ଦୁଇ ଭିନ୍ନ ବ୍ୟକ୍ତି— ମାତ୍ର ପରଂପରାରୁ ଜଣାଯାଏ ଏ ଦୁଇଟି ନାମ ଅଭିନ୍ନ । ତେଣୁ ଆମେ ତାଙ୍କୁ ଦାଇଓନିସିୟୁସ ବା ଲଂଜାଇନସ୍ ଅଥବା ଦାଇଓନିସିୟୁସ ଲଂଜାଇନସ୍ ରୂପେ ସ୍ୱୀକାର କରିବା । ପାଲମିରର ସୁଯୋଗ୍ୟ ମନ୍ତ୍ରୀ ଲଂଜାଇନସ ତୃତୀୟ ଶତାବ୍ଦୀରେ ଜୀବିତ ଥିଲେ । ଏହାର ବିପରୀତରେ ଅନ୍ୟମାନଙ୍କର ମତ ହେଲା—ଗ୍ରନ୍ଥର ଲେଖକ କୌଣସି ଗ୍ରୀସୀୟ ବା ରୋମୀୟ ବ୍ୟକ୍ତି ଓ ସେ ପ୍ରଥମ ଶତାବ୍ଦୀରେ ଏହି ଗ୍ରନ୍ଥ ରଚନା କରିଥିଲେ । ଏହି ସନ୍ଦର୍ଭରେ ସବୁ ଧରଣର ଲେଖକଙ୍କ ବିଷୟରେ ଉଲ୍ଲେଖ ଥିଲେହେଁ ପ୍ରଥମ ଶତାବ୍ଦୀର ପ୍ରଥମାର୍ଦ୍ଧର ପରବର୍ତ୍ତୀ କୌଣସି ଲେଖକଙ୍କ ନାମ ଓ ରଚନା ଉଲ୍ଲେଖିତ ହୋଇନାହିଁ । ପ୍ରଥମ ଶତାବ୍ଦୀର ପରବର୍ତ୍ତୀ କୌଣସି ଲେଖକଙ୍କ ନାମ ଉଲ୍ଲେଖ ହୋଇ ନଥିବାରୁ ଆମର ସନ୍ଦେହ ବୃଦ୍ଧି ପାଏ । ତଥାପି ଆମେ ଉକ୍ତ ସନ୍ଦର୍ଭ ସହିତ ତୃତୀୟ ଶତାବ୍ଦୀର ଲଂଜାଇନସ୍‌ଙ୍କ ନାମ ଯୋଡ଼ୁ ଥାଉ – କାରଣ, ପରଂପରାରୁ ଲଂଜାଇନସ୍‌ଙ୍କ ନାମ ସହିତ ଗ୍ରନ୍ଥର ଘନିଷ୍ଠ ସଂପର୍କ ସ୍ଥାପନ କରି ଆସିଛୁ । ସ୍କଟ୍ ଜେମସ୍ ମଧ୍ୟ ତାଙ୍କୁ ତୃତୀୟ ଶତାବ୍ଦୀର ସମାଲୋଚକ ରୂପେ ଗ୍ରହଣ କରିଛନ୍ତି । ସହାନୁଭୂତି ସହ ପାଠ କଲେ ଆମେ ନିଶ୍ଚିତ ହୋଇ ପାରିବା ଯେ ଏହା ପ୍ରଥମ ଶତାବ୍ଦୀର କୌଣସି ଲେଖକଙ୍କର କୃତି ନୁହେଁ । ଏହା ନିଶ୍ଚୟ ତାଙ୍କରି ରଚନା ଯେ ପ୍ଲାଟୋଙ୍କ ଚିନ୍ତାଧାରା ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିଲେ । ସେ ଅତି ସ୍ପଷ୍ଟ ଭାବରେ ତାଙ୍କୁ ତୃତୀୟ ଶତାବ୍ଦୀର ବ୍ୟକ୍ତି ରୂପେ ସ୍ୱୀକାର କରିଛନ୍ତି – "ଆମର ମନେ ରଖିବା ଉଚିତ ଯେ ଲଂଜାଇନସ୍ (ତୃତୀୟ ଶତାବ୍ଦୀ) ଜଣେ ଅଳଙ୍କାର ଶାସ୍ତ୍ରୀ ଥିଲେ ।" ତୃତୀୟ ଶତାବ୍ଦୀର ଏହି ଲଂଜାଇନସ୍ ଅତି ନିଷ୍ଠା ସହକାରେ ମହାରାଣୀ ଜେନୋବିୟାଙ୍କର ସେବା କରିଥିଲେ । ନିଜର ବୀରତ୍ୱ ଓ ବିଦଗ୍ଧତା ନିମନ୍ତେ ସେ ଇତିହାସରେ ପ୍ରସିଦ୍ଧ ଓ ନିଜର କର୍ତ୍ତ୍ରୀଙ୍କ ଲାଗି ଯୁଦ୍ଧ କ୍ଷେତ୍ରରେ ଗୌରବରେ ପ୍ରାଣପାତ କରିଥିଲେ ।

ସନ୍ଦର୍ଭର ଉଦ୍ଦେଶ୍ୟ—

ଅନ୍ତରଙ୍ଗ କାବ୍ୟ-ମର୍ମଜ୍ଞ ବନ୍ଧୁ ଟେରେନ୍ତିଆନୁସ୍‌ଙ୍କ ପ୍ରୀତ୍ୟର୍ଥେ ତଥା ତାଙ୍କର ଉଦାତ୍ତ ସମ୍ବନ୍ଧୀୟ ଜିଜ୍ଞାସାକୁ ପରିତୁଷ୍ଟ କରିବା ପାଇଁ ଲଂଜାଇନସ୍

ପଦ୍ୟାକାରରେ 'ଉଦାତ୍ତ-ତତ୍ତ୍ୱ' ସନ୍ଦର୍ଭ ରଚନା କରିଥିଲେ । ସତେ ଯେପରି ବନ୍ଧୁଙ୍କୁ ମାନସ-ଦୃଷ୍ଟିରେ ରଖି ସେ ଜଟିଳ ଉଦାତ୍ତ-ତତ୍ତ୍ୱକୁ ସୁବୋଧ ଶୈଳୀ ଓ ନାନା ଉଦାହରଣରେ ସମୃଦ୍ଧ କରି ପ୍ରକାଶ କରି ଚାଲିଛନ୍ତି । ଏହି ସନ୍ଦର୍ଭର ଏକ ବିଶେଷତ୍ୱ ହେଲା, ସନ୍ଦର୍ଭ-ପାଠ କାଳରେ ପାଠକ କ୍ଳାନ୍ତି ଅନୁଭବ କରେ ନାହିଁ । ପତ୍ରାଳାପ ଶୈଳୀରେ ସାହିତ୍ୟତତ୍ତ୍ୱ ବ୍ୟାଖ୍ୟାର ଏହା ଏକ ଅଭିନବ ପ୍ରୟାସ ।

ଲଂଜାଇନସ୍ ଏହି ଗ୍ରନ୍ଥ ରଚନା କରିବାକୁ ଏଇଥି ପାଇଁ ଉତ୍ସାହିତ ହୋଇଥିଲେ ଯେ ତାଙ୍କ ପୂର୍ବରୁ କେକିଲାଉସ୍ ରଚିତ ଉଦାତ୍ତ-ବିଷୟକ ପ୍ରବନ୍ଧ ପାଠ କରି ସେ ସମ୍ପୂର୍ଣ୍ଣ ନିରାଶ ହୋଇଥିଲେ । କାରଣ ଉକ୍ତ ପ୍ରାବନ୍ଧିକ ବିଷୟର ଗୌରବ ଓ ମହତ୍ତ୍ୱ ଅବଧାରଣା କରିବାକୁ ଅସମର୍ଥ ହୋଇଥିଲେ । ଲଂଜାଇନସ୍ ଅନୁଭବ କଲେ ପୂର୍ବସୂରୀଙ୍କ ଗ୍ରନ୍ଥ ସମ୍ପୂର୍ଣ୍ଣ ଅନୁପଯୁକ୍ତ ଓ ଅଯଥାର୍ଥ । ବିଷୟର ନିର୍ଯ୍ୟାସ ଗ୍ରହଣ କରିବାରେ ଅସାଫଲ୍ୟ ତଥା ସନ୍ଦର୍ଭଗତ ତ୍ରୁଟି ତାଙ୍କୁ ବ୍ୟଥିତ କରିଥିଲା । ପୂର୍ବବର୍ତ୍ତୀ ଲେଖକ ତାଙ୍କ ରଚନାରେ ଉଦାତ୍ତ ଆବେଗ ସମ୍ବନ୍ଧରେ ଆଲୋଚନା କରି ନଥିଲେ । ଲଂଜାଇନସ୍‌ଙ୍କ ମତରେ, ଏହା ଏକ ଗୁରୁତର ଅବହେଳା ଓ ପ୍ରମାଦ । ଆବେଗ ଉଦାତ୍ତର ଏକ ଉତ୍ସ ରୂପେ ପରିଗଣିତ ଓ ସେଥିପାଇଁ ଆବେଗର ଆଲୋଚନା ଉଦାତ୍ତ-ତତ୍ତ୍ୱ ପ୍ରସଙ୍ଗରେ ଅପରିହାର୍ଯ୍ୟ । ଧ୍ୱନିଷ୍ଟ କେକିଲଉସ୍ ପ୍ରତିଭାଧର ପ୍ଲାଟୋଙ୍କ ଉପରେ ଲିସିଅସ୍‌ଙ୍କୁ ସ୍ଥାନ ଦେଇଥିବାରୁ ଲଂଜାଇନସ୍ ଖେଦ ପ୍ରକଟ କରିଛନ୍ତି । ପୂର୍ବବର୍ତ୍ତୀ ଗ୍ରନ୍ଥର ଏବଂବିଧ ତ୍ରୁଟି ଗୁଡ଼ିକ ତାଙ୍କୁ ଉକ୍ତ ସନ୍ଦର୍ଭ ରଚନା ପାଇଁ ପ୍ରେରଣା ଯୋଗାଇଥିଲା ।

ଆଉ ଏକ କାରଣ ମଧ୍ୟ ଆଲୋଚ୍ୟ ସନ୍ଦର୍ଭ ରଚନା ପାଇଁ ଲଂଜାଇନସ୍‌ଙ୍କୁ ପ୍ରବୃତ୍ତ କରାଇଥିଲା । ପ୍ରଥମ ଶତାବ୍ଦୀର ଲେଖକ ଓ ବାଗ୍ମୀଗଣ ଶୈଳୀର ଆଧିକ୍ୟ ଉପରେ ଗୁରୁତ୍ୱ ଦେଉଥିଲେ । ସବୁ ପ୍ରକାର ଅନୌଚିତ୍ୟ, ଯଥା—ଆଡ଼ମ୍ବରପୂର୍ଣ୍ଣ, ଅସମଂଜସ ଓ ଅଦ୍ଭୁତ ପ୍ରଭୃତି ଉପରେ ସେମାନେ ଲକ୍ଷ୍ୟ ରଖିଥିଲେ । ଶୈଳୀର ବିଶିଷ୍ଟ ଦୋଷ ଏଇ ଗ୍ରନ୍ଥରେ ପ୍ରଦର୍ଶିତ ହୋଇଛି । ଆଡ଼ମ୍ବରପୂର୍ଣ୍ଣ ଶୈଳୀ, ପାଣ୍ଡିତ୍ୟପୂର୍ଣ୍ଣ ଗୌଣବ୍ୟାପାରରୁ ଆରମ୍ଭ ହୋଇ ଶୀତଳତାରେ ଶେଷ ହେଉଥିବା ଶୈଳୀ, ଅଦ୍ଭୁତ ଓ ଉଦ୍‌ଭଟ

ଆମ୍ବଗରମାରେ ବ୍ୟସ୍ତ ଶୈଳୀ କଥା ସେ କହିଛନ୍ତି ; ଅତି ଛନ୍ଦାତ୍ମକ ଶୈଳୀ ଯାହା ନୃତ୍ୟ-ସଙ୍ଗୀତକୁ ସ୍ମରଣ କରାଇ ଦିଏ, ଅତି-ସଂକ୍ଷେପଣ ଓ ଅତି-ବିସ୍ତାରଣା ତଥା ଶୁଷ୍କ ଓ ଇତର ଶବ୍ଦାବଳୀ—ଯେଉଁଥିରେ ମହତ୍ତ୍ୱ ନାହିଁ, ତାହାର ପ୍ରୟୋଗ ବିଷୟରେ ସେ ସତର୍କ କରି ଦେଇଛନ୍ତି । ଏହି ଲେଖକମାନେ ମାନସ ବୋଧ ହେଉଛନ୍ତି ବୋଲି ଦୁର୍ନାମରୁ ରକ୍ଷା ପାଇବା ପାଇଁ ଯତ୍ନ କରିବାକୁ ଯାଇ ସବୁ ପ୍ରକାର ଶୈଳୀ ପ୍ରୟୋଗରେ ବ୍ୟସ୍ତ ଥିଲେ । ଫଳରେ ଶୈଳୀ ବିଷୟରେ ଅତ୍ୟନ୍ତ ବିଶୃଙ୍ଖଳା ପରିଲକ୍ଷିତ ହେଉଥିଲା । ଲଂଜାଇନସ୍ ଏହି ସୁଯୋଗ ନେଇ ଲେଖକମାନଙ୍କର ରୁଚି-ବିକୃତିକୁ ମାର୍ଜିତ କରାଇବାକୁ ଚାହିଁଲେ । ସେ ଶୈଳୀକୁ ସାଧାରଣ ସ୍ତରରୁ ଊର୍ଦ୍ଧ୍ୱକୁ ଉଠାଇଲେ ଓ ଏହାକୁ ଯଥାର୍ଥ ଉଚ୍ଚ ମର୍ଯ୍ୟାଦା ପ୍ରଦାନ କଲେ । ଶୈଳୀ ସମ୍ବନ୍ଧରେ ଏ ଯୁଗ ନେତୃତ୍ୱର ଅପେକ୍ଷାରେ ଥିଲା ଓ ଲଂଜାଇନସ୍ ପରମ ବିଶ୍ୱାସ ସହକାରେ ସେଇ ଦାୟିତ୍ୱ ଗ୍ରହଣ କରିଥିଲେ । ସେ ଜଣେ ପ୍ରତିଭାଶାଳୀ ସମୀକ୍ଷକ—କେବଳ ଶୈଳୀର ଦୋଷ ପ୍ରଦର୍ଶନ କରି ନୁହେଁ, ଶୈଳୀର ଉଚ୍ଚ ଆଦର୍ଶ ପ୍ରତିଷ୍ଠା କରି ସେ ଅମର ହୋଇଛନ୍ତି । ଏ ଦୃଷ୍ଟିରୁ ତାଙ୍କ କୃତିର ପ୍ରକୃତ ମୂଲ୍ୟାଙ୍କନ କରାଯାଇପାରେ ।

ଲଂଜାଇନସ୍‌ଙ୍କ ପୂର୍ବ କାବ୍ୟ-ସିଦ୍ଧାନ୍ତ –

ଲଂଜାଇନସ୍‌ଙ୍କ ପୂର୍ବରୁ ସମାଲୋଚକମାନେ କବିତାରୁ କେବଳ ଶିକ୍ଷା ବା ଆନନ୍ଦ ବା ଉଭୟର ଅନୁସନ୍ଧାନ କରୁଥିଲେ । ପ୍ଲାଟୋ ନୈତିକ ଶିକ୍ଷା ଭିନ୍ନ କବିତାର କଥା କହୁ ନଥିଲେ । ଆରିଷ୍ଟୋଟଲ୍ ସାହିତ୍ୟରେ ଆନନ୍ଦତତ୍ତ୍ୱ ସଂସ୍ଥାପନ କରିଥିଲେ । କବିମାନେ ଶିକ୍ଷାଦାନ ଓ ଆନନ୍ଦର କଥା କହୁଥିବା ବେଳେ ବାଗ୍ମୀ ଓ ତାର୍କିକମାନେ ଯୁକ୍ତିଦ୍ୱାରା ଶ୍ରୋତା ଓ ପାଠକମାନଙ୍କୁ ସ୍ୱମତାନୁବର୍ତ୍ତୀ କରାଇବା ଉପରେ ବିଶ୍ୱାସ କରୁଥିଲେ । ଏଇ ତିନୋଟି ଶବ୍ଦ—ଶିକ୍ଷା, ଆନନ୍ଦ ଓ ଯୁକ୍ତି ଦ୍ୱାରା ସ୍ୱମତାନୁବର୍ତ୍ତୀ କରାଇବା ଶିଳ୍ପୀମାନଙ୍କର ଲକ୍ଷ୍ୟ ହୋଇ ପଡ଼ିଥିଲା । ହୋମରଙ୍କ ଭଳି ମହାକବି ବକ୍ତାଙ୍କ କର୍ତ୍ତବ୍ୟ ଓ ତାଙ୍କର ସଫଳତା ଶ୍ରୋତାମାନଙ୍କୁ ମୁଗ୍ଧ କରିବାରେ ନିହିତ ବୋଲି ସ୍ୱୀକାର କରୁଥିଲେ । ବିଖ୍ୟାତ ନାଟ୍ୟକାର ଆରିଷ୍ଟୋଫେନସ୍

କୌଣସି ଢଙ୍ଗରୁ ଲୋକଙ୍କୁ ଉତ୍ତମ କରିବା କବିର କର୍ତ୍ତବ୍ୟ ବୋଲି ଯୁକ୍ତି ଉପସ୍ଥାପନ କରିଥିଲେ । ଏହିଭଳି ବକ୍ତାଙ୍କ ଗୁଣକୁ ଚିହ୍ନିତ କରଯାଇଥିଲା— ସମୁଜ୍ଜ୍ୱଳ ଭାଷା ଓ ସୁବ୍ୟବସ୍ଥିତ ତର୍କ ଦ୍ୱାରା ସେ ଶ୍ରୋତାର ମନ ଉପରେ ଏପରି ପ୍ରଭାବ ପକାଇବେ ଯେ ଶ୍ରୋତା ନିର୍ବିବାଦରେ ତାଙ୍କ କଥା ଗ୍ରହଣ କରିନେବ । ଫଳତଃ, ଆହ୍ଲାଦ ଦାନ, ଶିକ୍ଷାଦାନ ଓ ପ୍ରଭାବ ଉତ୍ପାଦନ— ଏହାହିଁ ଲଂଜାଇନସ୍‌ଙ୍କ ପୂର୍ବ ସାହିତ୍ୟକାରମାନଙ୍କ କର୍ତ୍ତବ୍ୟ କର୍ମ ଥିଲା । ଏ ସବୁର ସମବାୟରେ ଏକ ଆଦର୍ଶବାଦୀ ଦୃଷ୍ଟିକୋଣହିଁ ପ୍ରାବଲ୍ୟ ଲାଭ କରିଥିଲା ।

ଲଂଜାଇନସ୍ ଏହି ସୂତ୍ରରେ ସନ୍ତୁଷ୍ଟ ହୋଇ ପାରି ନଥିଲେ । ତାଙ୍କର ବୈଶିଷ୍ଟ୍ୟ ହେଲା, ସେ ପୂର୍ବାଗ୍ରୀମାନଙ୍କଠାରୁ ଭିନ୍ନ ପ୍ରଶ୍ନ ଉତ୍ଥାପନ କରିଛନ୍ତି । ସେ ଏହି ସୂତ୍ରରେ କିଛି ଅଭାବ ଅନୁଭବ କରିଥିଲେ । କାରଣ ଏ ତିନୋଟିଠାରୁ କାବ୍ୟରେ ଅଧିକ କିଛି ଥାଏ । ସେ ତାଙ୍କର ବ୍ୟକ୍ତିଗତ ଅନୁଭବରୁ ଜାଣିଥିଲେ ଯେ ମହତ୍ ସାହିତ୍ୟ କେବଳ ଶିକ୍ଷାଦାନ କରେନାହିଁ । ଆନନ୍ଦ ଦିଏ ନାହିଁ କି ପ୍ରବର୍ତ୍ତନ ଦିଏ ନାହିଁ । ଏ କ୍ଷେତ୍ରରେ ସେ 'ଭାବୋନ୍ମାଦ'କୁ ସ୍ଥାପନ କରିଛନ୍ତି । କବିତା ପଠନ ଫଳରେ ପାଠକର ଆବେଗ ଜାତ ହେବା ଯୋଗୁ ତା ଉପରେ ଯେଉଁ ବିରାଟ ପ୍ରଭାବ ପଡ଼େ ସେ ସେଇ ବିଷୟରେ ଗୁରୁତ୍ୱ ଦେଇଛନ୍ତି । ପ୍ଲାଟୋ ଓ ଆରିଷ୍ଟୋଟଲ୍‌ଙ୍କ ଦୃଷ୍ଟିଭଙ୍ଗୀରୁ ସେ ଜାଣିଥିଲେ ଯେ କବିତାର ଏକ ସ୍ୱକୀୟ ବିରାଟ ଆନନ୍ଦ ଦାନ କରିବାର ଶକ୍ତି ରହିଛି । ସାହିତ୍ୟାନୁଭୂତିରେ ଏପରି କିଛି ଥାଏ ଯାହା ପୂର୍ବୋକ୍ତ ସୂତ୍ରରେ ସୂଚିତ ହୋଇନାହିଁ । ପ୍ଲାଟୋଙ୍କର ଏସ ରୂପ ସେ ନିଶ୍ଚୟ 'ଆୟନ' ନାମକ ଗ୍ରନ୍ଥର ସେଇ ଛନ୍ଦ ସହିତ ପରିଚିତ ଥିବେ ଯେଉଁଠାରେ ପ୍ଲାଟୋ ସ୍ୱକୀୟ ପ୍ରେରଣାତତ୍ତ୍ୱ ଉପସ୍ଥାପନ କରି କହିଛନ୍ତି — "ନିଜେ କାବ୍ୟଦେବୀ ପ୍ରଥମେ ଲୋକଙ୍କୁ ପ୍ରେରଣା ଦେଇଥାନ୍ତି, କାରଣ ଉତ୍ତମ କବିମଣ୍ଡଳୀ—ମହାକାବ୍ୟ ଓ ଗୀତି-କାବ୍ୟର କବିମାନେ, କେବଳ କଳା ଦ୍ୱାରା ନୁହେଁ—ସେମାନେ ଉତ୍‌ପ୍ରେରିତ ଓ ଆବିଷ୍ଟ ହୋଇଥାନ୍ତି ବୋଲି ସୁନ୍ଦର କବିତା ରଚନା କରିଥାନ୍ତି । ମାତ୍ର ପାନ ଭୋଜନ ମୂଳକ ଆମୋଦ ପ୍ରମୋଦରେ ଲିପ୍ତଥିବା କରିବାଣ୍ଟୀୟ ଲୋକେ ଯେପରି ନୃତ୍ୟ କଲାବେଳେ ସୁସ୍ଥ ମନରେ ନଥାନ୍ତି, ଗୀତି କବିମାନେ ସେହିପରି ରଚନା କଲାବେଳେ ବ୍ୟବସ୍ଥିତ

ମନ ଯୋଗ ସୁନ୍ଦର ଛନ୍ଦୋମୟୀ ରଚନା କରି ନଥାନ୍ତି । କାରଣ କବି ଏକ ଅଲୌକିକ, ପକ୍ଷଧର ଓ ପବିତ୍ର ସତ୍ତା ଓ ସେ ଉତ୍‌ପ୍ରେରିତ ନହେବା ଯାଏ ସୃଷ୍ଟି କରିବାକୁ ସମର୍ଥ ହୋଇ ପାରନ୍ତି ନାହିଁ – ସେତେବେଳେ ତାଙ୍କ ଭିତରେ ଆଉ ମନ ନଥାଏ । ଏହି ଅବସ୍ଥାରେ ନ ପହଞ୍ଚିବା ଯାଏ, ସେ ଶକ୍ତିହୀନ ଓ ନିଜର ଭବିଷ୍ୟତ୍ ବାଣୀ ଉଚ୍ଚାରଣ କରିବାକୁ ଅସମର୍ଥ ।”

ପ୍ଲାଟୋଙ୍କ ତତ୍ତ୍ୱାନୁସାରେ କବି ଜଣେ ଉତ୍‌ପ୍ରେରିତ ବ୍ୟକ୍ତିତ୍ୱ ଓ ସେ ସୁସ୍ଥମନା ନଥିବା ଅବସ୍ଥାରେ ଗୀତି-ଉଚ୍ଛ୍ୱାସ ପ୍ରକାଶ କରିଥାନ୍ତି । ଏଥିପାଇଁ ପ୍ଲାଟୋ କବିମାନଙ୍କୁ ଅବିବେକୀ ବୋଲି ଭର୍ତ୍ସନା କରିଛନ୍ତି ଯେ କି ଲୋକଙ୍କ ସମ୍ବେଗକୁ ଉଦ୍‌ବୋଧିତ କରି ସେମାନଙ୍କୁ ଉନ୍ମାର୍ଗଗାମୀ କରନ୍ତି ।

‘ଆୟୁନ’ର ପୂର୍ବୋକ୍ତ ପଂକ୍ତିଗୁଡ଼ିକର ପ୍ରତିଚ୍ଛବି ମନରେ ଥିବାରୁ ଲଂଜାଇନସ୍ ମଧ୍ୟ ତଦ୍ରୂପ ଭାବେ ଉତ୍‌ପ୍ରେରଣାତତ୍ତ୍ୱ ଉପରେ ବିଶ୍ୱାସ ସ୍ଥାପନ କରିଛନ୍ତି ଯେ କବି ଜଣେ ଆବିଷ୍ଟ ବ୍ୟକ୍ତି । ସେ ଆବିଷ୍କାର କରିଛନ୍ତି ଯେ ଏହିଥିରେ କବି ଓ କଳାର ଅଦ୍‌ଭୁତ ଶକ୍ତି ନିହିତ । ସେ ସେହି ଶକ୍ତିର ଉତ୍ସ ସନ୍ଧାନ କରିବାକୁ ଚେଷ୍ଟା କରି ନାହାନ୍ତି ; ମାତ୍ର ପାଠକ ଓ ଶ୍ରୋତା ଉପରେ ତାହାର ପ୍ରଭାବ ସମ୍ବନ୍ଧରେ ଅଧିକ ଉତ୍ସାହୀ ହୋଇ ଉଠିଛନ୍ତି । ସେ ଉପଲବ୍‌ଧି କରିଛନ୍ତି—ସର୍ବୋତ୍‌କୃଷ୍ଟ କାବ୍ୟ, ଯାହା ଉନ୍ନତ ଓ ଉଦାତ୍ତ, ତାହାର କେବଳ ଆନନ୍ଦ ଦାନ ବା ଯୁକ୍ତି ଦ୍ୱାରା ପ୍ରବର୍ତ୍ତିତ କରିବା ପ୍ରଭାବ ନାହିଁ, ଉଲ୍ଲାସ ଓ ସମୁନ୍ନତ କ୍ଷମତା ରହିଛି । ସେ ଉଦାତ୍ତକୁ ସାହିତ୍ୟର ଏକମାତ୍ର ଲକ୍ଷଣ ବୋଲି ଧରି ନେଇଛନ୍ତି । ଏହି ଉଦାତ୍ତର ଅର୍ଥ ହେଲା, ଭାଷାର ଏଭଳି ପ୍ରାଧାନ୍ୟ ଓ ସୌନ୍ଦର୍ଯ୍ୟ, ଯାହା ଉତ୍ତମ ବାଗ୍ମୀ ଭଳି ଏକ ମୁହୂର୍ତ୍ତରେ ପାଠକକୁ ମନ୍ତ୍ରମୁଗ୍‌ଧ କରି ଦେଇପାରେ । ଏହି ଆବେଗ, ଗଭୀରତା, ସମୁନ୍ନତି, ଉଲ୍ଲାସ ହେଉଛି ସାହିତ୍ୟରେ ଔଦାତ୍ତ୍ୟର ମୌଳିକ ସର୍ତ୍ତ । ଯେଉଁ ଭାବୋତ୍କର୍ଷ, ଆହ୍ଲାଦ ଓ ଦିବ୍ୟ ଆନନ୍ଦାନୁଭୂତିକୁ ପ୍ଲାଟୋ କାବ୍ୟ-ଜଗତରୁ ବହିଷ୍କୃତ କରିବାକୁ ଚାହୁଁଥିଲେ, ସେ ତାହାକୁ କାବ୍ୟ ନିମନ୍ତେ ଅପରିହାର୍ଯ୍ୟ ମନେ କରୁଥିଲେ । ସେ କାବ୍ୟର ମୋହକ ଗୁଣ ଓ ତାହାର ବେଦ୍ୟାନ୍ତର ବିଗଳନ ଶକ୍ତିକୁ (ଯାହାକୁ ପ୍ଲାଟୋ ନିନ୍ଦା କରିଥିଲେ) ପ୍ରଶଂସା କରୁଥିଲେ । ସେ ହୋମରଙ୍କଠାରୁ ଡିମୋସ୍ଥେନିସ୍‌ଙ୍କ ପର୍ଯ୍ୟନ୍ତ ଗ୍ରୀକ୍

ସାହିତ୍ୟ ବିଶ୍ଳେଷଣ କରି ଓ ବହୁ ଗ୍ରନ୍ଥରୁ ଉଦ୍ଧୃତି ଉଲ୍ଲେଖ କରି ଉଦାତ୍ତ ସମ୍ବନ୍ଧରେ ସ୍ୱ ମତ ପ୍ରତିଷ୍ଠିତ କରିଥିଲେ ।

ଆନନ୍ଦ, ଶିଳ୍ପ-ସୌନ୍ଦର୍ଯ୍ୟ ଓ ମହତ୍ତ୍ୱ—ଏହି ଗୁଡ଼ିକୁ ସେ ଶିଳ୍ପର ଫଳଶ୍ରୁତି କହିଛନ୍ତି । ସାହିତ୍ୟ ଓ ଶିଳ୍ପ ଆମକୁ ମହିତ୍ ଲୋକକୁ ଘେନିଯାଏ, ନୂତନ ଆନନ୍ଦ ଲୋକରେ ପ୍ରତିଷ୍ଠିତ କରେ । ସାହିତ୍ୟରେ ଉଦାତ୍ତତତ୍ତ୍ୱର ଅର୍ଥ ହେଲ, ପାଠକକୁ ତା ନିଜ ଭିତରୁ ଘେନିଯିବା ବା ନିଜ ଭିତରୁ ଉଠାଇ ନେବା । ଶିଳ୍ପୀର ଶକ୍ତି ପାଠକକୁ ଏତେ ଅଭିଭୂତ କରେ ଯେ ସେ ନିଜ ଭିତରେ ହଜିଯାଏ । ଓ୍ୱାର୍ଡସଓ୍ୱାର୍ଥଙ୍କ ଭାଷାରେ, ସେ ( ପାଠକ ) "lies suspended in body and becomes a living soul."

ଲଂଜାଇନସ୍ କାବ୍ୟ ନିମନ୍ତେ ଭାବୋତ୍କର୍ଷକୁ ମୂଳ ଓ ଅତି ଆବଶ୍ୟକ ତତ୍ତ୍ୱ କହୁଥିଲେ । ଏହି ଭାବୋତ୍କର୍ଷ, ପ୍ରଗାଢ଼ ଅନୁଭୂତି ବା ଚରମୋଲ୍ଲାସର ସ୍ରୋତ କ'ଣ ହୋଇପାରେ ସେ ବିଷୟରେ ସେ ଚିନ୍ତା କରି ନାହାନ୍ତି । ତାଙ୍କର ସିଦ୍ଧାନ୍ତ ହେଲ, କାବ୍ୟ ବା ସାହିତ୍ୟର ଚରମ ଉଦ୍ଦେଶ୍ୟ ପାଠକକୁ ଚରମୋଲ୍ଲାସ ପ୍ରଦାନ କରିବା—ତର୍କ ମାଧ୍ୟମରେ ସ୍ୱମତାନୁବର୍ତ୍ତୀ କରିବା ନୁହେଁ । ଏହି ଅବସ୍ଥାରେ ପାଠକ ବେଦ୍ୟାନ୍ତର ଶୂନ୍ୟ ହୋଇଯାଏ । ଏତେ ବେଳେ ଦୁଇଟି ଆତ୍ମା ଏକାକାର ହୋଇଯାଏ । ବାହ୍ୟାଭ୍ୟନ୍ତର ଭେଦ ରହେ ନାହିଁ । ଏହାକୁ ଭରତଙ୍କ ରସତତ୍ତ୍ୱର ବିଗଳିତ ବେଦ୍ୟାନ୍ତର ସ୍ପର୍ଶଶୂନ୍ୟ ଅବସ୍ଥା ସହିତ ତୁଳନା କରିଯାଇପାରେ । କବିଶକ୍ତି ପାଠକକୁ ବାଧ୍ୟ କରେ ତା' ସହିତ ଭାସି ଯିବା ପାଇଁ ଓ ସେ ମଧ୍ୟ କହିବା ପାଇଁ ବାଧ୍ୟ ହୁଏ—"ବାଃ, କବିର ବାଗ୍‌ବିନ୍ୟାସ କି ଚମତ୍କାର, କଳ୍ପନାର ବିହାର କେତେ ଉଚ୍ଚ ଓ ମହାନ୍, ଭାବନିଚୟ କେତେ ମହୀୟାନ୍ !" ପାଠକ କବି-ବ୍ୟକ୍ତିତ୍ୱ ସହିତ ନିଜକୁ ମିଶାଇ ଦିଏ ଓ ତାଙ୍କର ବାଗ୍‌ବିନ୍ୟାସରେ, ଭାବନାର ଐଶ୍ୱର୍ଯ୍ୟରେ ଓ ସଞ୍ଚରଣଶୀଳ ବର୍ଣ୍ଣନାରେ ଆକୃଷ୍ଟ ହୁଏ । ସକଳ ଚେଷ୍ଟା ସତ୍ତ୍ୱେ ସେ ନିଜକୁ ସଂଯତ କରିପାରେ ନାହିଁ, ସ୍ୱତଃ ତା' ତୁଣ୍ଡରୁ ପ୍ରଶଂସା ଭରି ବାଣୀ ଉଚ୍ଚାରିତ ହୁଏ ଓ ସେଇ ରଚନାର କବି ଯେପରି ରଚନା କାଳରେ ଆଲୋଡ଼ିତ ଓ ଉତ୍ତୋଳିତ ହୋଇଥିଲେ ପାଠକଟିଏ ସେହିପରି ଆନ୍ଦୋଳିତ ଓ ଉଦ୍ଧ୍ୱାସିତ ହେବାକୁ ଲଗେ । ଏତିକିବେଳେ ସ୍ରଷ୍ଟାର ସୃଷ୍ଟିଶକ୍ତିର ବିଜୟ ଘୋଷିତ

ହୁଏ । ପାଠକଠାରେ ପ୍ରଭାବ-ଉତ୍ପାଦନ କରିବା ଶକ୍ତି ଉପରେ ଲଂଜାଇନସ୍ ବିଶେଷ ଗୁରୁତ୍ୱ ଦେଉଥିଲେ ତାହା ଏଥିରୁ ପ୍ରତିପାଦିତ ହୁଏ,—But the sublime at the critical moment shoots forth and tears the whole thing to pieces like a thunderbolt and in a flash reveals all the author's power.

ସାହିତ୍ୟର ଏହି ଆନନ୍ଦ ଦାନର ଲକ୍ଷଣ ଲଂଜାଇନସ୍‌ଙ୍କ ପୂର୍ବରୁ କେହି କେହି କହିଥିଲେ ମଧ୍ୟ ସେମାନେ ଶିକ୍ଷାଦାନର କଥା ଭୁଲି ପାରି ନଥିଲେ । କିନ୍ତୁ ଲଂଜାଇନସ୍ ଶିକ୍ଷା ଦାନିକୁ ସାହିତ୍ୟ ବହିର୍ଭୂତରେ ସମ୍ପୂର୍ଣ୍ଣ ରୂପେ ପରିହାର କରିବାକୁ ଚାହିଁଥିଲେ । ସାହିତ୍ୟ ଆମକୁ ବିଶୁଦ୍ଧ ଆନନ୍ଦ ଦେବ ଓ ମହତ୍ତର ସୌନ୍ଦର୍ଯ୍ୟ ଲୋକକୁ ନେଇ ଯିବ—ଏତଦ୍ ବ୍ୟତୀତ ସାହିତ୍ୟର ଆଉ କୌଣସି କାର୍ଯ୍ୟ ନାହିଁ । ସାହିତ୍ୟର ଏହି ବୈଶିଷ୍ଟ୍ୟକୁ ସେ ଅପାର୍ଥିବ ବା ଅଲୌକିକ ଆନନ୍ଦ କହିଛନ୍ତି । କାବ୍ୟର ଔଦାତ୍ୟ କବି ଶକ୍ତିକୁ ପାଠକ ନିକଟରେ ଚକିତ ଉଦ୍‌ଭାସରେ ଅନେପାତ ଭଳି ପରିପ୍ରକାଶ କରି ତାହାକୁ ବିସ୍ମୟ-ବିମୁଗ୍ଧ କରିଦିଏ । ପ୍ରତିଭାର ସାର୍ବଭୌମ ଶକ୍ତି ବିରୁଦ୍ଧରେ ଦଣ୍ଡାୟମାନ ହେବା ଉଚିତ ନୁହେଁ । ଏହା ନିଜର ଅପ୍ରତିରୋଧ ଇଚ୍ଛା ଶକ୍ତିକୁ ଆମ ସମସ୍ତଙ୍କ ଉପରେ ସ୍ଥାପନ କରିଥାଏ । ଏଥିରୁ ଆମେ କବିତାର ମହିମାମୟ କାର୍ଯ୍ୟ ବ୍ୟାପାର, ସମ୍ବନ୍ଧରେ ଅବଗତ ହେଉ । ଏହି କଥାକୁ ଜୋବାର୍ଟ ପରବର୍ତ୍ତୀ ସମୟରେ କହିଥିଲେ—Nothing is poetry unless it transports ଓ ଡିକ୍ୟୁଏନ୍‌ସି ମଧ୍ୟ ଏହି ଭିତ୍ତି ଉପରେ ସାହିତ୍ୟର ଦୁଇଟି ବିଭାଗ – ଜ୍ଞାନର ସାହିତ୍ୟ ଓ ଶକ୍ତିର ସାହିତ୍ୟ, —ପାର୍ଥକ୍ୟ ନିର୍ଦ୍ଧାରଣ କରି କହିଥିଲେ – The function of the first is to teach, the function of the second is to move, ଅର୍ଥାତ୍ ପ୍ରଥମଟିର କାର୍ଯ୍ୟ ଶିକ୍ଷା ଦେବା ଓ ଦ୍ୱିତୀୟଟିର କାର୍ଯ୍ୟ ଆନନ୍ଦ ପ୍ରଦାନ କରିବା ।

ଲଂଜାଇନସ୍‌ଙ୍କର ଏହି ନବୀନ ସିଦ୍ଧାନ୍ତ—ମହତ୍ ସାହିତ୍ୟ ଆମକୁ ଉତ୍ତୋଳିତ କରି ଊର୍ଦ୍ଧ୍ୱଗାମୀ କରାଏ ଓ ଏହି ଉଦାତ୍ତ ପ୍ରଭାବ ସାହିତ୍ୟରେ ଆୟତ୍ତ କରଯାଇପାରେ ଯୁକ୍ତି ଦ୍ୱାରା ନୁହେଁ—ପ୍ରକାଶ ବା ଉଦ୍‌ଭାସନ ଦ୍ୱାରା ତଥା ତାହା ପୁଣି କଳ୍ପନାର ଦାନ---ଏହା ସାହିତ୍ୟର ସର୍ବପ୍ରଥମ ପ୍ରଭାବ

ଉତ୍ପାଦକତତ୍ତ୍ୱ । ପାଠକ ଚିତ୍ତରେ କାବ୍ୟର ପ୍ରଭାବ ଦୃଷ୍ଟିରୁ ସେ ସାହିତ୍ୟ ବିଚାର କରିଛନ୍ତି—ଭାରତୀୟ କାବ୍ୟଶାସ୍ତ୍ରର ବ୍ରହ୍ମାନନ୍ଦ ସହୋଦର ଭଳି ବେଦ୍ୟାନ୍ତର ସ୍ପର୍ଶଶୂନ୍ୟ ଅବସ୍ଥା ପ୍ରତି ସଙ୍କେତ କରି । କୁହାଯାଇପାରେ, ଲଂଜାଇନସ୍ ପାଶ୍ଚାତ୍ୟ ସାହିତ୍ୟତତ୍ତ୍ୱରେ ରସ-ଆନନ୍ଦବାଦର ପ୍ରଥମ ପ୍ରବର୍ତ୍ତକ ଓ ସମର୍ଥକ । ସେ 'କଳ୍ପନା' ଶବ୍ଦର ପ୍ରୟୋଗ କରି ନ ଥିଲେ ମଧ୍ୟ ଏଇଥିରୁ ତାଙ୍କର ସ୍ପଷ୍ଟ ମତର ସୂଚନା ମିଳେ ଯେ ସାହିତ୍ୟର ସମ୍ବନ୍ଧ ତର୍କ ସହିତ ନୁହେଁ—କଳ୍ପନା ସହିତ । ସାହିତ୍ୟ ତର୍କ ଦ୍ୱାରା ନୁହେଁ, କଳ୍ପନା ଦ୍ୱାରା ପାଠକକୁ ଅଭିଭୂତ କରେ । ଯେତେବେଳେ କଳ୍ପନା ଶକ୍ତି ପାଠକ ସମକ୍ଷରେ ପରିପ୍ରକାଶ ଲାଭ କରେ ସେତେବେଳେ ସେ ସମ୍ମୋହିତ ହୋଇଯାଏ । ଏହା ବିଦ୍ୟୁତ୍‌ସ୍ଫୁରଣ ଭଳି ମନ ଉପରେ ତାତ୍କାଳିକ ପ୍ରଭାବ ପକାଇଥାଏ । ଲଂଜାଇନସ୍ ଯଦି ଓଡ଼ିସିଠାରୁ ଇଲିଆଡ଼କୁ ଓ ସିସେରୋଙ୍କଠାରୁ ଡିମୋସ୍ଥେନିସଙ୍କୁ ଶ୍ରେଷ୍ଠ କହିଥାନ୍ତି ତାର କାରଣ ହେଲା, ଇଲିଆଡ଼ରେ ଜୀବନ୍ତ ଆବେଗ-ପ୍ରାଚୁର୍ଯ୍ୟ, ଶକ୍ତିଶାଳୀ ଅନୁଭୂତି, ଗତି, ଶକ୍ତି, ବେଗ ଓ ଯଥାର୍ଥ ଶବ୍ଦକଳ୍ପବିଧାନ ଓଡ଼ିସିଠାରୁ ବହୁ ଭାବରେ ଅଧିକ । ସେହିପରି ସିସେରୋଙ୍କ ଶୈଳୀ ଶିଥିଳ ଓ ସାଧାରଣ ; ଡିମୋସ୍ଥେନିସଙ୍କ ଶୈଳୀରେ ଜୀବନ୍ତ ଆବେଗ, ଗତି, ତତ୍ପରତା ଓ ପ୍ରାଚୁର୍ଯ୍ୟ ଆଦି ଗୁଣ ରହିଛି ଯାହା ଦ୍ୱାରା ପାଠକର ଚେତନା ସମ୍ପୂର୍ଣ୍ଣ ଅଭିଭୂତ ହୋଇଯାଏ ।

ଲଂଜାଇନସଙ୍କ ମତରେ, ସାହିତ୍ୟ ପାଠ ଫଳରେ ପାଠକ ଉପରେ ଯା ପ୍ରଭାବ ପଡ଼ୁଛି ତାହାକୁ ପରୀକ୍ଷା କରି ସାହିତ୍ୟକୃତିର ମୂଲ୍ୟ ବିଚାର କରିବାକୁ ହେବ—ସେ ଯଦି ସୃଷ୍ଟିର ଐଶ୍ୱର୍ଯ୍ୟ ଓ ଆବେଗ ଦ୍ୱାରା ସମୁନ୍ନତି ଲାଭ କରନ୍ତି, ଅପାର୍ଥିବ ଆନନ୍ଦ ଲାଭ କରନ୍ତି, ତେବେ ସେ ସୃଷ୍ଟି ଉତ୍ତମ ବୋଲି କହିବାକୁ ହେବ । ଏଇ ବିଚଳିତ ଓ ସମୁନ୍ନତ ହେବା ସମ୍ବେଦନ ଉପଭୋଗ୍ୟ—ଯେ ହେତୁ ଏହା ସାହିତ୍ୟର ମହତ୍ତ୍ୱ ଓ ଐଶ୍ୱର୍ଯ୍ୟରୁ ସମୁତ୍ସାରିତ । ଲଂଜାଇନସ୍ ସାହିତ୍ୟର ଆନନ୍ଦକୁ ସର୍ବଶ୍ରେଷ୍ଠ ମାନବୀୟ ଗୁଣ ସଙ୍ଗେ ସଂଯୋଗ କରିଛନ୍ତି । ସାହିତ୍ୟ ସଂଗେ ଜଡ଼ିତ ଏଇ ସମୁନ୍ନତି ଭାବ ତତ୍‌କ୍ଷଣାତ୍ ପାଠକ-

ଠାରେ ଏକ ସମୁନ୍ନତ ଭାବନା ଜାତ କରିବାକୁ ଓ ତାହାକୁ ଏକ ଆବେଗାତ୍ମକ ଅନୁଭୂତି – ଶିଖରକୁ ନେଇ ଯିବାକୁ ସମର୍ଥ । ଲଂଜାଇନସ୍‌ଙ୍କ ମତରେ ସାହିତ୍ୟ-କୃତିର ସର୍ବୋଚ୍ଚ ଲକ୍ଷ୍ୟ ହେଉଛି ଔଦାତ୍ତ୍ୟ । ଏହା ଏପରି ଏକ ଗୁଣ ଯାହା କୌଣସି ସୃଷ୍ଟିକୁ ଯଥାର୍ଥରେ ପ୍ରଭାବାତ୍ମକ କରିଥାଏ । ସାହିତ୍ୟର ଚରମ କାର୍ଯ୍ୟ ଓ ସାର୍ଥକତା ଉଦାତ୍ତ ହେବାରେ ନିହିତ । ତେଣୁ କୌଣସି ଉଚ୍ଚକୋଟିର ରଚନାର ସହଜତମ ପ୍ରମାଣ ହେଉଛି, ତାହାର ବିଚଳିତ କରିବାର ଶକ୍ତି । ପାଠକ ହୃଦୟରେ ପ୍ରଭାବୋତ୍ପାଦନ କରିବା ସାହିତ୍ୟର କାର୍ଯ୍ୟ ଓ ସେ ପ୍ରଭାବ ମହତ୍ ପ୍ରଭାବ ହେବା ଉଚିତ ।

ଲଂଜାଇନସ୍ ବିଶ୍ଳେଷଣ କରି ଦେଖାଇଛନ୍ତି ଯେ ତାହାହିଁ ମହତ୍ ସାହିତ୍ୟ ଯାହା ପାଠକକୁ କେବଳ ଥରେ ମାତ୍ର ନୁହେଁ, ବାରମ୍ବାର ଉତ୍ତେଜିତ ଓ ଉଦ୍ବୁଦ୍ଧ କରେ । ତାଙ୍କର ମୂଳ କଥା—ମହତ୍ ସାହିତ୍ୟ ଓ ଶିଳ୍ପ ତାହାକୁ କୁହାଯିବ, ଯାହା ମନୁଷ୍ୟକୁ ଅନୁପ୍ରାଣିତ କରେ ଓ ପୁନଃ ପୁନଃ ଊର୍ଦ୍ଧ୍ୱତର ସତ୍ତାରେ ବିଚରଣ କରାଏ । କେବଳ ଥରେ ନୁହେଁ, ଯେତେ ଥର ପାଠ କରାଯିବ ସେତେ ଥର ରସାସ୍ୱାଦନ ଲାଭ ହେବ । ତଦ୍‌ଭିନ୍ନ, କେବଳ କାବ୍ୟବିଶେଷଜ୍ଞ ଓ ବିଦଗ୍ଧମାନେ ଯେ ମହତ୍ ସାହିତ୍ୟର ରସୋପଭୋଗ କରିବେ, ତାହା ନୁହେଁ, ଯେ କୌଣସି ବୟସର, ଯେ କୌଣସି ଭାଷାଭାଷୀ ବ୍ୟକ୍ତି – ଦେଶ କାଳ ଜାତି ଧର୍ମ-ନିର୍ବିଶେଷରେ, ସମସ୍ତେ ମହତ୍ ସାହିତ୍ୟର ଆନନ୍ଦ ଉପଭୋଗ କରିପାରିବେ । ତା'ହେଲେ ତାହାର ମହତ୍ତ୍ୱ ପ୍ରମାଣିତ ହେବ ।

ଲଂଜାଇନସ୍ ପ୍ରଥମ ରୋମାଣ୍ଟିକ୍ ସମୀକ୍ଷକ ହେଲେ ମଧ୍ୟ ଶୃଙ୍ଖଳାର ବିରୋଧ କରି ନାହାନ୍ତି ; ମାତ୍ର କବି ଓ ସମାଲୋଚକମାନଙ୍କୁ ଧ୍ରୁପଦୀ ଶୃଙ୍ଖଳା ମାନି ଚଳିବାକୁ ନିର୍ଦ୍ଦେଶ ଦେଇଛନ୍ତି । ପାଠକର ଉପଭୋଗ୍ୟତା ଉପରେ ଗୁରୁତ୍ୱାରୋପ କରିଥିଲେହେଁ ସେ କେବଳ ପାଠକତତ୍ତ୍ୱର ସମ୍ପୃକ୍ତ ଅନୁଭବହିଁ ଶିଳ୍ପଗୁଣର ଏକମାତ୍ର ନିୟାମକ ଶକ୍ତି ବୋଲି ମନେ କରୁ ନଥିଲେ । ସେ

ସାହିତ୍ୟ ବିଗ୍ରହରେ ପରିଚ୍ଛେଦ ବୁଦ୍ଧି ଓ ଅଭିଜ୍ଞତାକୁ ମଧ୍ୟ ସ୍ୱୀକୃତି ଦେଇଛନ୍ତି । ସମାଲୋଚକମାନଙ୍କ ପ୍ରତି ସେ ଯେପରି ନିର୍ଦ୍ଦେଶ ଦେଇଛନ୍ତି...."ସାହିତ୍ୟର ବିଗ୍ରହ ବହୁ ଉଦ୍ୟମର ଘର୍ଷ....ବିଳମ୍ବିତ ପୁରସ୍କାର ।" ସେ ମଧ୍ୟ ଦାବୀ କରିଛନ୍ତି ଯେ କବି ତାର କଳାର କୌଶଳ ଆୟତ୍ତ କରିବାକୁ ପ୍ରଯତ୍ନଶୀଳ ହେବା ଉଚିତ ।

ଉଦାତ୍ତର ଉଦ୍‌ଗମ ସ୍ରୋତ –

ହୋରେସ୍‌ଙ୍କ ଭଳି ଲଂଜାଇନସ୍ କଳା ଓ ପ୍ରକୃତିକୁ ପରସ୍ପରର ପରିପୂରକ ମନେ କରୁଥିଲେ । ସାହିତ୍ୟରେ ଏ ଦୁହେଁ ଔଦାତ୍ୟ ଉତ୍ପନ୍ନ କରିବାରେ ସହାୟକ ହୋଇଥାନ୍ତି । ଯଦିଓ ଲଂଜାଇନସ୍‌ଙ୍କର ମତ ଥିଲା ଯେ, "କଳା ପ୍ରକୃତି ଭଳି ପ୍ରତୀତ ହେଲେ ପୂର୍ଣ୍ଣତା ଲାଭ କରିଥାଏ," ତଥାପି ସେ କବିର ଅଧ୍ୟୟନ ବା ଭାରତୀୟ ସାହିତ୍ୟ-ତତ୍ତ୍ୱରେ ଯାହାକୁ 'ଅଭ୍ୟାସ' କୁହାଯାଇଛି, ତା ଉପରେ ଗୁରୁତ୍ୱ ଦେଇଛନ୍ତି । କବି ପକ୍ଷରେ ନୈସର୍ଗିକ ଗୁଣପରି ଅଭ୍ୟାସର ମଧ୍ୟ ପ୍ରୟୋଜନ ରହିଛି । ଅଭ୍ୟାସ ବା ପରିଶ୍ରମ ବିନା ଓ ଶିଳ୍ପ-ଚାତୁର୍ଯ୍ୟ ବିନା ସେ ବୈଶିଷ୍ଟ୍ୟ ଅର୍ଜନ କରି ପାରନ୍ତି ନାହିଁ । ଏପରିକି ନୈସର୍ଗିକ ଗୁଣ ମଧ୍ୟ ଯଥାର୍ଥ କଳାତ୍ମକ ପ୍ରତିମାନ ଗୁଡ଼ିକୁ ମାନି ନ ଚଳିଲେ ମଉଳି ଯାଏ । ତାଙ୍କର ବିଶ୍ୱାସ ଥିଲା ଯେ, ପ୍ରତିଭା ଆକାଶରୁ ଖସି ପଡ଼ିବା ବସ୍ତୁ ନୁହେଁ । ସେଥିପାଇଁ ସତତ ଅଭ୍ୟାସ ଅପେକ୍ଷିତ । ଏହା ସତ୍ୟ ଯେ, "ପ୍ରକୃତି ହେଉଛି ପ୍ରଥମ ଉପାଦାନ । ପ୍ରକୃତି ନିଷ୍ପତ୍ତି ଯୋଗାଣ ଦେବ । ମାତ୍ର ପ୍ରକୃତି କଳାର କାର୍ଯ୍ୟ କରି ନପାରେ ; କଳାର କାର୍ଯ୍ୟ ଶୃଙ୍ଖଳିତ କରିବା, ନିୟନ୍ତ୍ରଣ କରିବା । ପ୍ରଶ୍ନ ଉଠେ, ତେବେ କ'ଣ ଉଦାତ୍ତ ଭାବୋତ୍କର୍ଷ ଏକ ଅର୍ଜିତ କଳା ? କେତେକ ଆଲୋଚକ କହନ୍ତି ଯେ, ଉଦାତ୍ତ ପ୍ରବୃତ୍ତି ନୈସର୍ଗିକ— କୌଣସି ନିୟମ ବା ଶିକ୍ଷା ଦ୍ୱାରା ଏହାକୁ ଅର୍ଜିତ, ସଂଗୃହୀତ ବା ନିୟନ୍ତ୍ରିତ କରାଯାଇ ନପାରେ । ଲଂଜାଇନସ୍ ଏହି ପ୍ରଶ୍ନର ଉତ୍ତରରେ କହିଛନ୍ତି ଯେ, କବିର ପ୍ରତିଭା ଏକ ପ୍ରାକୃତିକ ଗୁଣ ଓ ଏଥିପାଇଁ କେବେହେଲେ ନିୟମ

କରିଯାଇ ନପାରେ ; ତଥାପି ପ୍ରକୃତିର ଅନୁଶୀଳନରୁ ଜଣାଯାଏ ଯେ, ତାହାର ଅଭିବ୍ୟକ୍ତିରେ ମଧ୍ୟ ଏକ ବ୍ୟବସ୍ଥା ରହିଛି । ପ୍ରକୃତି - ନିୟମବନ୍ଧହୀନ ରୂପେ କାର୍ଯ୍ୟ କରେ ନାହିଁ । ନିୟମ ଓ ବନ୍ଧନର ମୂଳତତ୍ତ୍ୱ ପ୍ରକୃତିର ନୈସର୍ଗିକ ପ୍ରକ୍ରିୟାରେ ଲକ୍ଷ୍ୟ କରିବା ପାଇଁ ଲଂଜାଇନସ୍ ପରାମର୍ଶ ଦେଇଛନ୍ତି । ପ୍ରକୃତିରେ କେବେ ଅନ୍ଧ ହୋଇ ନଥାଏ, ଏଣୁ କାବ୍ୟର ନିୟମରେ ମଧ୍ୟ ଅତିର ପ୍ରାଦୁର୍ଭାବକୁ ସେ ନିଷେଧ କରିଛନ୍ତି । ତାଙ୍କ ମତରେ, ପ୍ରକୃତି, ଯାହା ଦିବ୍ୟ ଓ ମହାନ୍, ସ୍ୱୟଂ ସକଳ ବିଷୟରେ ନିୟମର ବିକାଶ ସାଧନ କରେ । ସଂକ୍ଷେପରେ, ଲଂଜାଇନସ୍ କାବ୍ୟକୃତିରେ ନୈସର୍ଗିକ ଗୁଣ ଓ ଜ୍ଞାନ ସାଧନା— ଉଭୟର ଦାନ ସ୍ୱୀକାର କରିଛନ୍ତି । ସେ କହିଛନ୍ତି ଯେ, ଯେଉଁମାନେ ପ୍ରତିଭାଧର ଓ ସର୍ବୋଚ୍ଚ ସ୍ତରର କବି, ସେମାନେ ମଧ୍ୟ ରଚନାରେ ଯେପରି କୌଣସି ତ୍ରୁଟି ବିଚ୍ୟୁତି ରହି ନଯାଏ ସେଥିପ୍ରତି ସାବଧାନ ହେବା ଉଚିତ ; ଏପରିକି ଦୃଷ୍ଟି ବହିର୍ଭୂତ ଭାବେ ମଧ୍ୟ ନୁହେଁ । ସାମାନ୍ୟ ତ୍ରୁଟି ପ୍ରତି କବି ସାବଧାନ ରହିବାକୁ ସେ ନିର୍ଦ୍ଦେଶ ଦେଇଛନ୍ତି । ହୋମରଙ୍କ ସମ୍ବନ୍ଧରେ ସେ କହିଛନ୍ତି ଯେ, ସେ ହୋମର ଓ ଅନ୍ୟ ବଡ଼ ଲେଖକଙ୍କ ରଚନାରେ ସାମାନ୍ୟ ତ୍ରୁଟି ମଧ୍ୟ ଲକ୍ଷ୍ୟ କରି ନାହାନ୍ତି । ସେ ଶବ୍ଦାଡ଼ମ୍ବର, ଛଳନା ଓ ଆତ୍ମବଡ଼ିମା ପ୍ରୟୋଗ ବିଷୟରେ ସାବଧାନ କରି ଦେଇଛନ୍ତି ଓ ସୂଚାଇ ଦେଇଛନ୍ତି ଯେ, ଏଇ ଦୋଷ ଗୁଡ଼ିକ ଗୋଟିଏ ସାଧାରଣ କାରଣରୁ ରଚନାରେ ଦେଖିବାକୁ ମିଳେ—ଭାବନାରେ ନୂତନତାର ଅନୁସନ୍ଧାନ, ଏହା ଏପରି ଏକ ଖିଆଲ୍ ଯେଉଁଥିରେ ସାଂପ୍ରତିକ ଯୁଗ ପ୍ରମତ୍ତ । ସେ ମଧ୍ୟ ଶବ୍ଦ-ନିର୍ବାଚନ, ଶୈଳୀଗତ ଅଳଙ୍କାର ଓ ରଚନା-ଗୌରବ ଉପରେ ଗୁରୁତ୍ୱ ଦେଇଛନ୍ତି ।

ସାହିତ୍ୟର ବାହ୍ୟ-ଉପାଦାନ ବିଷୟରେ ଆଲୋଚନା କରି ସାରି ଲଂଜାଇନସ୍ ତାଙ୍କର ପ୍ରତିପାଦ୍ୟ ବିଷୟ ପ୍ରତି ଫେରି ଆସିଛନ୍ତି—କୌଣସି ସାହିତ୍ୟକୃତିକୁ ମହତ୍ କୁହାଯିବ, ଯଦି ତାହାର ପ୍ରଭାବରେ ପାଠକ ଆବେଗାତ୍ମକ ଉତ୍ତେଜନାରେ ସଞ୍ଚାଳିତ ହୁଏ । ସେ ନିଜର ମତ ପୁନରୁକ୍ତି କରି କହିଛନ୍ତି—ମୁଁ ଦୃଢ଼ ଭାବରେ ପ୍ରତିପାଦନ କରିପାରେ ଯେ ଏକ ପ୍ରକୃତ

ସଚମ୍ଭୃଗ ଯଥାସ୍ଥାନରେ ସୌନ୍ଦର୍ଯ୍ୟ ନିମନ୍ତେ ଯାହା କରିପାରେ, ଅନ୍ୟ କୌଣସି ଦ୍ୱାରା ତାହା ହୋଇ ନପାରେ । କାରଣ ଏହା ଶ୍ରୋତାଙ୍କୁ ପ୍ରେରଣା ଦିଏ—ସତେ ଯେପରି ଏକ ପ୍ରମତ୍ତ ଉନ୍ମାଦନାରେ ଅବାରିତ ଉପରୁ ଉତ୍ଥାପିତ ହୋଇ ଆବିଷ୍କୃତାରେ ପରିପୂର୍ଣ୍ଣ କରିଦିଏ । ସାହିତ୍ୟର ଲକ୍ଷ୍ୟ ହେଲା—ବିଚଳିତ କରିବା, ଉତ୍ତେଜିତ କରିବା, ଉନ୍ନତ କରିବା ଓ ସମାଲୋଚକର ଦାୟିତ୍ୱ ହେଲା, ସେ ଦେଖାଇ ଦେବେ କେଉଁ ଉପାଦାନ ଏଇ ପରିଣାମ ଜାତ କରିବା ପାଇଁ ଯଥାର୍ଥ ରୂପେ ଉପଯୋଗୀ । ଜଣେ ମହତ୍ତ୍ୱ ସ୍ରଷ୍ଟା ପ୍ରକୃତ ମହତ୍ ଆତ୍ମାର ଅଧିକାରୀ ବୋଲି ବିଶ୍ୱାସ କରି ଲଂଜାଇନସ୍ ଦେଖାଇଛନ୍ତି ଯେ ଯେଉଁମାନଙ୍କର ଜୀବନ ହୀନ, ତୁଚ୍ଛ ଓ ଦାସତ୍ୱ ଗ୍ରସ୍ତ ସେମାନେ କୌଣସି ଆଶ୍ଚର୍ଯ୍ୟଜନକ ଓ ଅମୃତତ୍ୱର ଯୋଗ୍ୟ ସୃଷ୍ଟି କରି ପାରିବେ ନାହିଁ ।

ଉପରେ ଯାହା କୁହାଗଲା ସେଥିରୁ ଏକଥା ସ୍ପଷ୍ଟ ଯେ ଲଂଜାଇନସ୍ ଜଣେ ମୌଳିକ ସମୀକ୍ଷକ ଯେ ଏକ ନୂଆ କଥା ଆବିଷ୍କାର କରିଛନ୍ତି—ପ୍ଲାଟୋ ଓ ଆରିଷ୍ଟୋଟଲ ଯାହା କହିଥିଲେ ତାଠାରୁ ନୂଆ କଥା କହିଛନ୍ତି । ସାହିତ୍ୟର ନୂତନ ଦିଗନ୍ତ ପ୍ରତି ସେ ପାଠକର ଦୃଷ୍ଟି ଆକର୍ଷଣ କରି ପାରିଛନ୍ତି । ସ୍ୱକୀୟ ଦୃଷ୍ଟିକୋଣ ଉପସ୍ଥାପନ କରିବାରେ ତାଙ୍କର ଶୈଳୀ ମଧ୍ୟ ଉନ୍ମାଦନା ପୂର୍ଣ୍ଣ, ବ୍ୟକ୍ତିନିଷ୍ଠ ଓ ଜୀବନ୍ତ । ପୂର୍ବବର୍ତ୍ତୀ ସମୀକ୍ଷକମାନଙ୍କ ରଚନାରେ ଏଇ ଧର୍ମ ନଥିଲା । ଉଦାତ୍ତ ତତ୍ତ୍ୱ ସମ୍ବନ୍ଧୀୟ ତାଙ୍କର ପ୍ରସିଦ୍ଧ ସନ୍ଦର୍ଭରେ ଆମେ ଲେଖକଙ୍କର ନିଷ୍ଠା, ବିଚାରର ଉଦାରତା ଓ ପାଣ୍ଡିତ୍ୟ ସମ୍ମତ ନମ୍ରତା ଆଦି ବୈଶିଷ୍ଟ୍ୟ ଲକ୍ଷ୍ୟ କରୁ । ଦୃଷ୍ଟିର ପ୍ରତ୍ୟକ୍ଷତା, ସାହିତ୍ୟର ମୂଳ ତତ୍ତ୍ୱାନୁସନ୍ଧାନ ଓ ଗ୍ରନ୍ଥ ଦୃଷ୍ଟିର ରଜୁତା ପ୍ରତି ଗ୍ରନ୍ଥକର୍ତ୍ତାଙ୍କର ସ୍ୱାଭାବିକ ଅଭିରୁଚି ମଧ୍ୟ ତହିଁରୁ ଉପଲବ୍ଧି କରିହୁଏ ।

ସମାଲୋଚକ ହିସାବରେ ଲଂଜାଇନସ୍ଙ୍କର ସର୍ବଶ୍ରେଷ୍ଠ ଅବଦାନ ହେଲା ଯେଉଁ ଯୁଗରେ ବିଭ୍ରାନ୍ତ ଆଦର୍ଶ ଗୃହୀତ ହେଉଥିଲା, ସେଇ ଯୁଗରେ ସେ ଗ୍ରୀକ୍ ଧ୍ରୁପଦୀ କଳାର ଆଦର୍ଶ ପ୍ରତି ଲୋକଙ୍କ ଧ୍ୟାନ ଆକର୍ଷଣ କରିଥିଲେ ।

ହୋରେସ ଓ ଅନ୍ୟ ରୋମୀୟ ସମୀକ୍ଷକମାନେ—ଯେଉଁମାନେ ଧ୍ରୁପଦୀ ସାହିତ୍ୟର କୌଶଳ ଓ ରୂପଗତ ଲକ୍ଷଣ ବିଷୟରେ ଅଧିକ ବ୍ୟସ୍ତ ଥିଲେ, ଲଂଜାଇନସ୍‌ହିଁ ଏକମାତ୍ର ବ୍ୟକ୍ତି ଯେ ଧ୍ରୁପଦୀ ସାହିତ୍ୟର ପ୍ରକୃତ ଆତ୍ମାକୁ ଚିହ୍ନିବାକୁ ସମର୍ଥ ହୋଇଥିଲେ ଓ ଏହାର ଶାଶ୍ୱତ ସୂତ୍ରାବଳୀକୁ ବ୍ୟାଖ୍ୟା କରିଥିଲେ । ତେଣୁ ତାଙ୍କୁ ଧ୍ରୁପଦୀ ଆତ୍ମାର ସର୍ବଶ୍ରେଷ୍ଠ ବ୍ୟାଖ୍ୟାକାର ରୂପେ ଚିହ୍ନିତ କରାଯାଇ ପାରେ । ସେ ମଧ୍ୟ ପ୍ରଥମ ରୋମାଣ୍ଟିକ୍ ସମୀକ୍ଷକ—କାରଣ ସେହିଁ ପ୍ରଥମେ ଗୁରୁତ୍ୱ ଦେଇ କହିଥିଲେ ଯେ, ମହତ୍ ସାହିତ୍ୟ କୃତିରେ ଔଦାତ୍ତ୍ୟ ଓ ଔନ୍ନତ୍ୟ ରହିଥାଏ ଯାହା ପାଠକକୁ ବିଚଳିତ କରି ତାକୁ ନିଜ ଭିତରୁ ଊର୍ଦ୍ଧ୍ୱକୁ ଉଠାଇ ନିଏ ।

ସାହିତ୍ୟରେ ଉଦାତ୍ତର ପାଞ୍ଚଗୋଟି ମୂଳସ୍ରୋତ ସମ୍ବନ୍ଧରେ ଲଂଜାଇନସ୍‌ଙ୍କର ସିଦ୍ଧାନ୍ତ ହେଲା –(୧) ମହତ୍ ଧାରଣାବଳୀର କ୍ଷମତା ବା ବିଷୟ-ଗରିମା (୨) ଉଦ୍ଦାମ ପ୍ରେରଣାର ଆବେଗ । ଏ ଦୁଇଟି ସ୍ରୋତ ନୈସର୍ଗିକ ପ୍ରତିଭାର ଦାନ । ତା'ପରେ ଆସେ ତିନିଗୋଟି ସ୍ରୋତ, ଯେଉଁଗୁଡ଼ିକ ମୁଖ୍ୟତଃ କଳା-ନିର୍ଭର । ସେଗୁଡ଼ିକ ହେଲେ—(୩) ସମୁଚିତ ଅଳଙ୍କାର ସନ୍ନିବେଶ (୪) ଉପଯୁକ୍ତ ଭାଷା ଓ (୫) ମହତ୍ତ୍ୱ-ବ୍ୟଂଜକ ରଚନାରୀତି । ଏହି ପାଞ୍ଚଗୋଟି ସ୍ରୋତ ବିଷୟରେ ୩୪ ଗୋଟି ଅଧ୍ୟାୟରେ ପ୍ରଚୁର ଦୃଷ୍ଟାନ୍ତ ସହିତ ଆଲୋଚନା କରାଯାଇଛି । ଗ୍ରନ୍ଥ କର୍ତ୍ତା ସ୍ୱକୀୟ ମନୋମୁଗ୍ଧକର ଶୈଳୀରେ ଶକ୍ତିଶାଳୀ ଓ ପ୍ରଭାବାତ୍ମକ ଭାବେ ତାଙ୍କର ବିଷୟକୁ ବିଶ୍ଳେଷଣ କରିବାରେ ସମର୍ଥ ହୋଇଛନ୍ତି । ୧—ମହତ୍ ଧାରଣାବଳୀର କ୍ଷମତା ବା ବିଷୟ-ଗରିମା—

ଲଂଜାଇନସ୍ ମନେ କରନ୍ତି ଯେ ଭାବନାର ଔନ୍ନତ୍ୟ ପ୍ରକୃତିର ଦାନ ଓ ଏହା ସହଜ ସାଧ୍ୟ ନୁହେଁ । ଏହା ଆତ୍ମାର ମହତ୍ତ୍ୱ ଉପରେ ନିର୍ଭର କରେ । ମହାନ୍ ଧାରଣାର ଗ୍ରାହିକା-ଶକ୍ତି ମନର ଉଚ୍ଚତାରୁ ସମ୍ଭବ ହୋଇଥାଏ । କ୍ଷୁଦ୍ର ଓ ହୀନ ଭାବରୁ ମୁକ୍ତ ହେଲେ ମନର ଉଚ୍ଚତା ପ୍ରାପ୍ତି ଘଟେ ।

କ୍ଷୁଦ୍ର ବୁଦ୍ଧି ବ୍ୟକ୍ତି ଏହି ମହତ୍ତ୍ୱ ଭାବନାର ଅଧିକାରୀ ହୋଇପାରେ ନାହିଁ ବା କ୍ଷୁଦ୍ର ବିଷୟରେ ଅହରହ ବୁଡ଼ି ରହିଥିବା ବ୍ୟକ୍ତି କଦାପି ଉଦାତ୍ତ ରଚନା କରିପାରେ ନାହିଁ । ଲଂଜାଇନସ କହିଛନ୍ତି – ଔଦାତ୍ୟ ମହାନ୍ ଆତ୍ମାର ପ୍ରତିଧ୍ୱନି ବା ପ୍ରତିରୂପ (Sublimity is, so to say, the image of greatness of soul) । ଆତ୍ମାର ସମୁନ୍ନତି ଘଟିଲେ ଭାବନାର ସମୁନ୍ନତି ଘଟେ । ଔଦାତ୍ତ୍ୟ ଶକ୍ତି ବଳରେ ଅନୁଚ୍ଚାରିତ ଭାବନା ମଧ୍ୟ ବେଳେବେଳେ ପ୍ରଶଂସିତ ହୋଇଥାଏ । ଉଦାର ଓ ମହତ୍ତ୍ୱାକାଂକ୍ଷୀ ଆତ୍ମାରେ ଭାବନାର ଗରିମା ବିଦ୍ୟମାନ । ଲୋଭୀ ଓ ସ୍ୱାର୍ଥପର ବ୍ୟକ୍ତି ଉଦାତ୍ତ-ଭାବନା ଲାଭ କରି ନ ପାରନ୍ତି । ଉଦାତ୍ତ-ଭାବନା ମୁଖ୍ୟତଃ ଉଚ୍ଚମନା ବ୍ୟକ୍ତିଠାରେ ସୁଲଭ ।

ପୂର୍ବକାଳର ମହାନ୍ କବିମାନଙ୍କ ରଚନାର ଅନୁଶୀଳନ ଓ ଅନୁସରଣ ଫଳରେ ଭାବନାରେ ଔଦାତ୍ତ୍ୟ ଆସିପାରେ । ଲଂଜାଇନସ୍ ଏହି ଅନୁସରଣକୁ ଚୌର୍ଯ୍ୟବୃତ୍ତି କହି ନାହାନ୍ତି । ମହାକବିମାନଙ୍କ ରଚନାବଳୀକୁ ଆଦର୍ଶସ୍ୱରୂପ ସମ୍ମୁଖରେ ରଖି ତହିଁରୁ ପ୍ରେରଣା ଗ୍ରହଣ କରି ସ୍ୱକୀୟ ରଚନାରେ ଔଦାତ୍ତ୍ୟ ସଞ୍ଚାର କରିବା ସ୍ୱଳ୍ପ ପ୍ରତିଭାସମ୍ପନ୍ନ କବିମାନଙ୍କ ପକ୍ଷରେ ଲାଭଦାୟକ । ଏପରିକି ପ୍ଲାଟୋ ମଧ୍ୟ ମହାକବି ହୋମରଙ୍କୁ ଅନୁସରଣ କରି ଭାବନାର ଗରିମା ଅର୍ଜନ କରିଥିଲେ—ପ୍ଲାଟୋଙ୍କ ଦାର୍ଶନିକ ଆଲୋଚନାରେ ଏତେ ସୁନ୍ଦର ଚିତ୍ରକଳ୍ପ-କୁସୁମ ଫୁଟି ପାରି ନଥାନ୍ତା କିମ୍ବା ସର୍ବସ ସେ କବିତାର ଭାଷା ଓ ବିଷୟ ଆୟତ୍ତ କରି ପାରି ନଥାନ୍ତେ ଯଦି ସେ ହୃଦୟ ଓ ଆତ୍ମାରେ ହୋମରଙ୍କ ପ୍ରତିଦ୍ୱନ୍ଦ୍ୱୀ ହେବାକୁ ଅଭିଳାଷୀ ହୋଇ ନ ଥାନ୍ତେ । ପ୍ଲାଟୋଙ୍କ ରଚନା କାବ୍ୟଗୁଣସମ୍ପନ୍ନ ହୋଇ ଉଠିଛି ଏଥି ପାଇଁ ଯେ ହୋମରଙ୍କୁ ଅନୁସରଣ କରିବାକୁ ସେ ପ୍ରବଳ ଯତ୍ନ କରିଛନ୍ତି ।

ମୁଖ୍ୟ ବର୍ଣ୍ଣନୀୟ ବିଷୟ ଗୁଡ଼ିକର ନିର୍ବାଚନ ଓ ସେଗୁଡ଼ିକୁ ଏକତ୍ରୀକରଣ ଦ୍ୱାରା ଧାରଣାରେ ଐଶ୍ୱର୍ଯ୍ୟ ଆଣିଯାଇ କରିଯାଇପାରେ । ମହାନ୍ ସମୀକ୍ଷକ ନିଜର ମତକୁ ସମର୍ଥନ କରିବା ପାଇଁ ସାଫୋ ଓ ହୋମରଙ୍କ

ରଚନାରୁ ଉଦାହରଣ ଦେଇଛନ୍ତି । ବର୍ଣ୍ଣନୀୟ ବିଷୟ ନିମନ୍ତେ ଅନୁପଯୋଗୀ ଉପାଦାନକୁ ସେମାନେ ପରିହାର କରୁଥିଲେ । କୌଣସି ଗୌଣ, ନଗଣ୍ୟ, ଅନୁପଯୁକ୍ତ ଓ ବିରକ୍ତିକର ବିଷୟକୁ ସେମାନେ ସମ୍ପୂର୍ଣ୍ଣ ବର୍ଜନ କରୁଥିଲେ । କାରଣ ଏହି ଦୋଷ ଗୁଡ଼ିକ ଔଦାତ୍ତ୍ୟ ଉତ୍ପାଦନର ବାଧକ ସ୍ୱରୂପ ।

୨- ଉଦ୍ଦାମ ପ୍ରେରଣାର ଆବେଗ—

ମନର ଉଚ୍ଚତା ଭଳି ଗଭୀର ଆବେଗ ମଧ୍ୟ ଏକ ନୈସର୍ଗିକ ଦାନ । ସ୍ୱରର ଗାମ୍ଭୀର୍ଯ୍ୟ ନିମନ୍ତେ ସମୀକ୍ଷକ ଅକୃତ୍ରିମ ଭବ୍ୟ ଆବେଗର ପ୍ରାଧାନ୍ୟ ଦାବୀ କରିଛନ୍ତି । ଦୁର୍ଭାଗ୍ୟବଶତଃ ଲଂଜାଇନସ୍‌ଙ୍କ ଏହି ଆବେଗ ସମ୍ବନ୍ଧୀୟ ଆଲୋଚନା ବିଷୟରେ ଜାଣିବାର ଅବକାଶ ନାହିଁ । ସନ୍ଦର୍ଭର ଶେଷ ଭାଗରେ ଏ ବିଷୟରେ ଏକ ସ୍ୱତନ୍ତ୍ର ଗ୍ରନ୍ଥ ରଚନା କରିବା ପାଇଁ ସେ ଅଭିଳାଷ ବ୍ୟକ୍ତ କରିଛନ୍ତି ; କିନ୍ତୁ ସେହି ଅଭିଳାଷ ପୂରଣ ହେବା ବିଷୟରେ କିଛି ଜଣାଯାଏ ନାହିଁ ଅଥବା ହୋଇଥିଲେ ସେ ଗ୍ରନ୍ଥ ଲୁପ୍ତ ହୋଇ ଯାଇଛି ।

ଉଦାତ୍ତ ବିଚାରର ଆଲୋକରେ ଆମେ ଆବେଗାତ୍ମକ ତାତ୍ପର୍ଯ୍ୟର ଏକ ଜୀବନ୍ତ ଛବି ଅଙ୍କନ କରି ପାରିବା । ଏହା ସ୍ପଷ୍ଟ ଯେ, ଭାବନାର ଐଶ୍ୱର୍ଯ୍ୟ ଏକ ଆବେଗାତ୍ମକ ଆବେଦନ ଲୋଡ଼େ । ଯଦି ଭାବନା ସମୁନ୍ନତ ଓ ମହାନ୍, ତେବେ ତାହା ଏପରି ଅଭିବ୍ୟକ୍ତି ଲୋଡ଼ିବ ଯାହା ଅନ୍ତିମମାତ୍ରାରେ ଆବେଗାତ୍ମକ । କବିତା ତ ଶକ୍ତିଶାଳୀ ସମ୍ବେଗର ଅଭିବ୍ୟକ୍ତି । ଗଭୀରତାଶୂନ୍ୟ ଭାବର ସ୍ଥାନ ସାହିତ୍ୟରେ ନାହିଁ । କହିବା ନିଷ୍ପ୍ରୟୋଜନ ଯେ, ସମ୍ବେଗର ଗଭୀରତା ବିନା ସମୁନ୍ନତି ସମ୍ଭବ ନୁହେଁ । ଏହି ଆବେଗହିଁ ଭାଷାକୁ ଦୈବିତ ଆବିଷ୍ଟତାରେ ପରିପୂର୍ଣ୍ଣ କରିଦିଏ । ଆତ୍ମିକ ଓ ପ୍ରବଳ ସମ୍ବେଗର ଅଧିକାରୀ ହେଲେ କବି ଉତ୍ତୋଳିତ ଓ ସମୁନ୍ନତ ହୋଇ ଉଠନ୍ତି ଓ ତାଙ୍କର ରଚନା ତତ୍‌କ୍ଷଣାତ୍ ପାଠକର ମନୋରାଜ୍ୟ ଅଧିକାର କରି ବସେ । ଏଇ ଆବେଗର ପ୍ରଭାବ ମନରୁ ସକଳ ପାର୍ଥିବ ଭାବନା ତଡ଼ି ଦିଏ, ସାଂସାରିକ ଜଂଜାଳ-ଭାବନା ଲୋପ ପାଏ

ଓ ପାଠକ ମୁହୂର୍ତ୍ତକ ପାଇଁ କବିର କାବ୍ୟଜଗତରେ ପ୍ରବେଶ କରେ । ଆବେଗର ଗଭୀରତା ଉପରେ କବି ଓ ପାଠକର ଏକାତ୍ମ ହେବା ନିର୍ଭର କରେ । ଦୁଇଟି ମନର ଏଇ ସଂଯୋଗ ଆବେଗର ଗଭୀରତା ବା ଅଧୀରତା ମାଧ୍ୟମରେ ସମ୍ଭବ ହୁଏ । ଆବେଗ ଯେତେ ଶକ୍ତିଶାଳୀ ହେବ, ପାଠକ ସେତେ ପ୍ରଭାବିତ ଓ ସମୁନ୍ନତ ଲାଭ କରିବ ।

ଆବେଗର ପ୍ରାବଲ୍ୟ ବୟସାଧୀନ । ଏହା ସ୍ୱାଭାବିକ ଯେ, ଯୌବନ-କାଳୀନ ଭାବ ଅଧିକ ପ୍ରାଣବନ୍ତ ଓ ସୂକ୍ଷ୍ମ ; ମାତ୍ର ବାର୍ଦ୍ଧକ୍ୟରେ ଏଇ ଭାବ ଅବଦମିତ ହୋଇଯାଏ । ଯଦି ଯୌବନକୁ ଉଦୟକାଳୀନ ସୂର୍ଯ୍ୟଙ୍କ ସହିତ ତୁଳନା କରିଯାଏ, ତେବେ ବାର୍ଦ୍ଧକ୍ୟକୁ ଅସ୍ତକାଳୀନ ସୂର୍ଯ୍ୟଙ୍କ ସହିତ ତୁଳନା କରାଯିବ । ଏହି ଦୁଇ ଅବସ୍ଥାରେ କିରଣରେ ମଧ୍ୟ ପାର୍ଥକ୍ୟ ଦେଖାଯାଏ— ଯୌବନରେ ଯାହା ପ୍ରଖର ଓ ଉଜ୍ଜ୍ୱଳ, ବାର୍ଦ୍ଧକ୍ୟରେ ତାହା ଅନୁଷ୍ଣ ଓ କୋମଳ । ଏ ଦୃଷ୍ଟିରୁ ଲଞ୍ଜାଇନସ୍ ଓଡ଼ିଶିଠାରୁ ଇଲିଅଡ୍‌କୁ ଉଚ୍ଚସ୍ଥାନ ଦେଇଛନ୍ତି । କବିର ବୟସର ଉତ୍ତାପ କାବ୍ୟରୁ ଅନୁଭୂତ ହୁଏ । ହୋମରଙ୍କ ଇଲିଅଡ୍‌ରେ ଯେଉଁ ଉଷ୍ଣତା ଓ ପ୍ରାଖର୍ଯ୍ୟ ତାହା ଓଡ଼ିଶିରେ ନାହିଁ । ଇଲିଅଡ୍ କାବ୍ୟ ହୋମରଙ୍କ ଯୌବନର ରଚନା । ଓଡ଼ିଶିରେ ସେ ବର୍ଣ୍ଣନାତ୍ମକ ଶୈଳୀ ଅବଲମ୍ବନ କରିଛନ୍ତି ଯାହା ବାର୍ଦ୍ଧକ୍ୟରେ ଘଟିବା ସମ୍ଭବ । ଏହା କବି ପ୍ରାଣର ଉତ୍ତାପ ଓ ଉନ୍ମାଦନା ହରାଇଥିବା ଲକ୍ଷ୍ୟ କରାଯାଏ ।

ଆବେଗର ଗମ୍ଭୀରତା ସବୁ କବିଙ୍କଠାରେ ସମାନ ନୁହେଁ । ଲଞ୍ଜାଇନସ୍ ସିସେରୋଙ୍କଠାରୁ ଡେମୋସ୍ଥେନିସ୍‌ଙ୍କୁ ଔଦାର୍ଯ୍ୟ ଦୃଷ୍ଟିରୁ ଉଚ୍ଚସ୍ଥାନ ଦେଇନ୍ତି । ଡେମୋସ୍ଥେନିସ୍‌ଙ୍କୁ ସେ ଚକ୍ରବାତ ବା ଅଶନିପାତ ସଙ୍ଗେ ତୁଳନା କରିଛନ୍ତି ; କିନ୍ତୁ ସିସେରୋ ବନାଗ୍ନି ସଦୃଶ, ସେ ସର୍ବସ ସମାନ ଦାହିକାଶକ୍ତି ପ୍ରଦର୍ଶନ କରିନାହାନ୍ତି ।

ଲଞ୍ଜାଇନସ୍ ଆବେଗର ଦୁଇଟି ଶ୍ରେଣୀ ଦେଖାଇଛନ୍ତି— ଉତ୍କୃଷ୍ଟ ଓ

ହୀନ ଆବେଗ । ଉତ୍କୃଷ୍ଟ କୋଟିର ଆବେଗ ଦ୍ୱାରା ଆତ୍ମାର ଉତ୍କର୍ଷ ସାଧିତ ହୁଏ । ହୀନ କୋଟିର ଆବେଗ, ଯଥା—ଭୟ, ଶୋକ ଆଦି ଦ୍ୱାରା ଆତ୍ମାର ଅପକର୍ଷ ଘଟେ । ସେ କାବ୍ୟ ନିମନ୍ତେ ଉଦାତ୍ତ ଆବେଗର ପ୍ରୟୋଜନୀୟତା ସ୍ୱୀକାର କରିଛନ୍ତି ।

୩- ସମୁଚିତ ଅଳଙ୍କାର ସନ୍ନିବେଶ—

ଲଞ୍ଜାଇନସ୍ ଏହି ସନ୍ଦର୍ଭର ଚଉଦଟି ଅଧ୍ୟାୟରେ କାବ୍ୟରେ ଅଳଙ୍କାର-ବିଧାନ ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରିଛନ୍ତି । ପ୍ରଥମ ଶତାବ୍ଦୀର ବାଗ୍ମୀ ଓ କବିମାନେ ଶୈଳୀଗତ ଅନୌଚିତ୍ୟରେ ଲିପ୍ତ ଥିଲେ ଓ ନିର୍ବାଧ ଭାବେ ଅଳଙ୍କାର ପ୍ରୟୋଗ କରୁଥିଲେ । କାବ୍ୟାଳଙ୍କାର ପ୍ରୟୋଗର କୌଣସି ମନୋବିଜ୍ଞାନ ସମ୍ମତ ଆଧାର ନ ଥିଲା । ଲଞ୍ଜାଇନସ୍ ଏହି ଅଧ୍ୟାୟଗୁଡ଼ିକରେ ସେ ଯୁଗର ପ୍ରଚଳିତ ଦୋଷଗୁଡ଼ିକ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି ।

ସେ ପ୍ରଥମରୁ ସ୍ପଷ୍ଟ କରିଦେଇଛନ୍ତି ଯେ ଅଳଙ୍କାର ଅଦରକାରୀ ଭୂଷଣ ନୁହେଁ, ବାହ୍ୟ ପ୍ରକ୍ଷେପ ବା ବାହାରୁ ଆଣି କାବ୍ୟ ଶରୀରରେ ଲଦି ଦେବା ନୁହେଁ କିମ୍ବା କଟକ କୁଣ୍ଡଳବତ୍ ଆଙ୍ଗିକ ଭୂଷଣ ନୁହେଁ । ଶୈଳୀରେ ଚମତ୍କାରିତା ସୃଷ୍ଟି କରିବାରେ ଓ ସମ୍ବେଗକୁ ଘନୀଭୂତ କରିବାରେ ଏ ଗୁଡ଼ିକ ମୁଖ୍ୟ ଭୂମିକା ଗ୍ରହଣ କରନ୍ତି । ଔଦାତ୍ତ୍ୟ ସହିତ ଅଳଙ୍କାରର ନୈସର୍ଗିକ ସମ୍ପର୍କ ରହିଛି । ଅଳଙ୍କାର ଔଦାତ୍ତ୍ୟକୁ ସାହାଯ୍ୟ ଦିଏ ଓ ନିଜେ ମଧ୍ୟ ଏହାଦ୍ୱାରା ଅସାଧାରଣ ବଳପ୍ରାପ୍ତ ହୁଏ । ଏହା ଭୂଷଣ ଭୂଷ୍ୟ ଭାବ । ଅଳଙ୍କାର ପ୍ରୟୋଗରେ କେତେକ କଳା-କୌଶଳ ଭାବ ଥାଏ ଯାହା ଶ୍ରୋତାମନରେ ବିରକ୍ତି ଜାତ କରେ । ଏହାକୁ ଦୂର କରିବାକୁ ହେଲେ ଔଦାତ୍ତ୍ୟ ଓ ଆବେଗର ସମର୍ଥନ ଲୋଡ଼ା । ଯଦି ଭାବନା ଓ ଆବେଗ ଉଦାତ୍ତ, ତେବେ ଅଳଙ୍କାର ଆତ୍ମଗୋପନ କରି ରହେ । ଉନ୍ନତ ଶୈଳୀ ଅଳଙ୍କାରଗୁଡ଼ିକୁ ଦମନ କରି ରଖେ—ଯେଉଁପରି ତାରକାମାନେ ସୂର୍ଯ୍ୟାଲୋକରେ ଦୃଷ୍ଟି ଅନ୍ତରାଳରେ

ରହିଥାନ୍ତି । ଏଠାରେ ଔଦାତ୍ତ୍ୟକୁ ପ୍ରଖର ସୂର୍ଯ୍ୟ କିରଣ ସଙ୍ଗେ ଓ ଅଳଙ୍କାରକୁ ତାରକା ସଙ୍ଗେ ତୁଳନା କରାଯାଇଛି । ଏହି ଭାବେ ଅଳଙ୍କାରଠାରୁ ଔଦାତ୍ତ୍ୟର ଗୁରୁତ୍ୱ ଅଧିକ ? ଆବେଗ ଓ ଭାଷାର ଗରିମା ଅଳଙ୍କାରଠାରୁ ପାଠକକୁ ଅଧିକ ପ୍ରଭାବିତ କରେ । ସେଠାରେ ଅଳଙ୍କାର ସବୁତେ ଯେପରି ଯବନିକା ଅନ୍ତରାଳରେ ଲୁଚି ରହେ ।

ଲଞ୍ଜାଇନସ୍ ଆହୁରି ମଧ୍ୟ କହିଛନ୍ତି, ଅଳଙ୍କାରର ଯଥୋଚିତ ସନ୍ନିବେଶ ବା ପ୍ରୟୋଗ ଫଳରେ ବକ୍ତାର ଭାଷାରେ ଚମତ୍କୃତ ଓ ପ୍ରଭାବ ସୃଷ୍ଟି ହୁଏ । ସ୍ଥାନ, କାଳ, ପରିସ୍ଥିତି ଓ ଅଭିପ୍ରାୟ - ଏ ଚାରୋଟି ବିଷୟ ବିଚାରକୁ ନେଇ ଅଳଙ୍କାର ପ୍ରୟୋଗ କରିବାକୁ ସେ ପରାମର୍ଶ ଦେଇଛନ୍ତି । ସ୍ୱୟଂ ଘଟଣାରୁ ଉଦ୍‌ଭୂତ ଅଳଙ୍କାରର ତାତ୍କାଳିକ ପ୍ରଭାବ କ୍ଷମତା ଥାଏ— ଏଥିପାଇଁ ବକ୍ତା ବା କବିଙ୍କୁ କୌଣସି ପ୍ରାକ୍-ଅଧ୍ୟୟନ, ପ୍ରସ୍ତୁତି ବା ଭାବନା କରିବାକୁ ପଡ଼ି ନ ଥାଏ । ଅଳଙ୍କାର ଶୈଳୀର ଅବିଚ୍ଛେଦ୍ୟ ଅଙ୍ଗ ହେବା ଉଚିତ । ଏହା ଶୈଳୀକୁ କୌଣସି ପ୍ରକାର କୃତ୍ରିମତାର ସାହାଯ୍ୟ ବିନା ଶକ୍ତି ସମ୍ପନ୍ନ ଓ . ଆବେଗ ଅଧୀର କରି ତୋଳେ । ଏହାହିଁ କାବ୍ୟରେ ଅଳଙ୍କାରର ଭୂମିକା, ତାହା ନ ହୋଇ ଅଳଙ୍କାର ନିଜେ ସାମ୍ରାଜ୍ଞୀ ଭଳି ବସିଲେ ହାସ୍ୟାସ୍ପଦ ହୁଏ ।

ଲଞ୍ଜାଇନସ୍ ଉଦାତ୍ତର ପୋଷକ ଅଳଙ୍କାର ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରି ସେଗୁଡ଼ିକର ବୈଶିଷ୍ଟ୍ୟ-ବିଚାର ଓ କାବ୍ୟୋପଯୋଗିତା ନିର୍ଦ୍ଧାରଣ କରିଛନ୍ତି । ସେଗୁଡ଼ିକ ହେଲେ—ବିସ୍ତାରଣା, ପ୍ରଶ୍ନାଳଙ୍କାର, ବିପର୍ଯ୍ୟୟ, ସଞ୍ଚୟନ, ପୁନରାବୃତ୍ତି, ସାର, ପ୍ରତ୍ୟକ୍ଷୀକରଣ, ପର୍ଯ୍ୟାୟୋକ୍ତି ଓ ଛିନ୍ନବାକ୍ୟ ଆଦି ।

୪-ଉପଯୁକ୍ତ ଭାଷା –

ଲଞ୍ଜାଇନସ୍ ଭାବନା ଓ ପଦ-ବିନ୍ୟାସକୁ ଅନ୍ୟୋନ୍ୟାଶ୍ରିତ କହନ୍ତି ।

ଭାବନାର ଐଶ୍ୱର୍ଯ୍ୟ ଔଦାତ୍ତ୍ୟର ଏକ ଗୁଣ ହେଲେ ସେଇ ଭାବନାକୁ ଅଭିବ୍ୟକ୍ତ ଦାନ କରୁଥିବା ଶବ୍ଦାବଳୀ ମଧ୍ୟ ଔଦାତ୍ତ୍ୟ ସୃଷ୍ଟି କରିଥାନ୍ତି । ଶବ୍ଦ-ସୌନ୍ଦର୍ଯ୍ୟ ଉପରେ ଗୁରୁତ୍ୱ ଦେଇ ସେ କହିଛନ୍ତି—"ସୁନ୍ଦର ଶବ୍ଦାବଳୀ ଭାବନାକୁ ଏକ ବିଶେଷ ଆଲୋକ ପ୍ରଦାନ କରିଥାଏ ।" ଶବ୍ଦ ଦ୍ୱାରା ଭାବନା ଅମରତା ଲାଭ କରେ । ଯଥାସ୍ଥାନରେ ଉପଯୁକ୍ତ ଓ ପ୍ରଭାବଶାଳୀ ଶବ୍ଦ ପ୍ରୟୋଗ ଦ୍ୱାରା ଶବ୍ଦ-ସୌନ୍ଦର୍ଯ୍ୟ ପ୍ରକାଶ ପାଏ । କ୍ଷୁଦ୍ର ବା ସାଧାରଣ ଶବ୍ଦଦ୍ୱାରା ଉଦାତ୍ତ ଭାବନା ଅଭିବ୍ୟକ୍ତ ନ ହୋଇ ଗରିମାମୟୀ ଭାଷାରେ ହିଁ ଅଭିବ୍ୟକ୍ତ ହୋଇଥାଏ ।

ତ୍ରିଂଶ ଅଧ୍ୟାୟରେ ଲଞ୍ଜାଇନସ୍ ଗମ୍ଭୀର ଶବ୍ଦାବଳୀର ନିର୍ବାଧ ପ୍ରୟୋଗ ବିଷୟରେ ସତର୍କ କରି ଦେଇଛନ୍ତି – ଏକ ନଗଣ୍ୟ ବିଷୟକୁ ଗାମ୍ଭୀର ଶବ୍ଦାବଳୀରେ ପ୍ରକାଶ କରିବା ଉପହାସାସ୍ପଦ । ଅତି ସାଧାରଣ ବିଷୟ ପାଇଁ ସମୃଦ୍ଧ ଭାଷା ବିନ୍ୟାସ କରିବା କୌଣସି ଶିଶୁ ମୁଖରେ ଭୟପ୍ରଦ ଅଭିନୟର ମୁଖା ଲଗାଇବା ସହିତ ସମାନ ।

ସେ ପୁଣି କହିଛନ୍ତି ଯେ, ଅଳଂକୃତ ଭାଷାଠାରୁ ପରିଚିତ ଓ ଘରୁଆ ଭାଷା ବେଳେବେଳେ ଅଧିକ ପ୍ରାଣବନ୍ତ ହୋଇଉଠେ । ଏପରି ଭାଷା ସାଧାରଣ ଲୋକେ ମଧ୍ୟ ବୁଝି ପାରନ୍ତି ।

ସେ ଶବ୍ଦ ବିନ୍ୟାସର ଅନ୍ୟ ଏକ ଦିଗ—ରୂପକମୟୀ ଶବ୍ଦ-ଯୋଜନା ସମ୍ବନ୍ଧରେ ମଧ୍ୟ ଆଲୋଚନା କରିଛନ୍ତି । କେକିଲିଉସ୍ ରଚନାରେ ରୂପକର ସଂଖ୍ୟା ନିର୍ଦ୍ଧାରଣ କରିଥିବାରୁ ସେ ତାହାର ସମାଲୋଚନା କରିଛନ୍ତି । ରୂପକର ପ୍ରୟୋଗ ପରିସ୍ଥିତି ବା ଘଟଣା ଉପରେ ନିର୍ଭର କରେ । ଏ ବିଷୟରେ ଡେମୋସ୍ଥେନିସ୍ ଅଭ୍ରାନ୍ତ ନିର୍ଦ୍ଦେଶ ଦେଇଛନ୍ତି । ତାଙ୍କର ଆବେଗୋଚ୍ଛଳ କଥନ ପାଠକକୁ ରୂପକର ସଂଖ୍ୟା ବିଷୟରେ ବିସ୍ମୃତ କରାଇଦିଏ । ପାଠକ ବା ଶ୍ରୋତା ଯେତେବେଳେ ଆନ୍ଦୋଳିତ ବା ଅଧୀର

ହୋଇ ଉଠିବେ, ସେତେବେଳେ ସେ ରଚନାରେ ବା ଭାଷଣରେ କେତେଗୋଟି ରୂପକ ସ୍ଥାନ ପାଉଛି, ସେଗୁଡ଼ିକୁ ଗଣନା କରିବାକୁ ସୁଝିବେ ନାହିଁ । ବସ୍ତୁତଃ ସମାନ୍ତରରେ ପ୍ରକାଶିତ ରୂପକମାଳା ଶୈଳୀକୁ ପ୍ରଭାବଶାଳୀ କରେ । ଫଳରେ ଔଦାତ୍ତ୍ୟର ଆବିର୍ଭାବ ଘଟେ । ସେ ପ୍ଲାଟୋଙ୍କ ରଚନାରୁ ରୂପକ ପ୍ରୟୋଗର ସାର୍ଥକ ଉଦାହରଣ ଦେଇ ଔଦାତ୍ତ୍ୟ ସୃଷ୍ଟିରେ ରୂପକର ଅନୁକୂଳତା ପ୍ରତିପାଦନ କରିଛନ୍ତି ।

୫- ମହତ୍ତ୍ୱବ୍ୟଞ୍ଜକ ରଚନା ରୀତି—

ଶୈଳୀଗତ ବିଶେଷତ୍ୱର ସର୍ବଶେଷ କଥା ହେଲା; ଶବ୍ଦାବଳୀର ଯଥୋଚିତ ସନ୍ନିକରଣ । ଏହା ଦ୍ୱାରା ସାମଞ୍ଜସ୍ୟ ସୃଷ୍ଟି ହୁଏ ଓ ଆମ ଆତ୍ମାରେ ଭବ୍ୟତା, ଗରିମା ଓ ଊର୍ଜା ଜାତ ହୁଏ । ମଧୁର ଶବ୍ଦାବଳୀ ପାଠକ ଓ ଶ୍ରୋତାର ହୃଦୟକୁ ରଞ୍ଜନ କରେ । ଶବ୍ଦଗୁଡ଼ିକ ଇଷ୍ଟକଖଣ୍ଡ ସଦୃଶ ଓ ସେଗୁଡ଼ିକ ଦ୍ୱାରା ଏକ ବୈଭବପୂର୍ଣ୍ଣ ପ୍ରାସାଦ ନିର୍ମାଣ କରିଯାଇପାରେ । ଶବ୍ଦଗୁଡ଼ିକୁ ଅଯଥା ବିସ୍ତୃତ ବା ସଂକ୍ଷିପ୍ତ କଲେ ସେଗୁଡ଼ିକ ରଚନା ବା ବାକ୍ୟର ଗାମ୍ଭୀର୍ଯ୍ୟ ନଷ୍ଟ କରିଦିଅନ୍ତି । ଲଞ୍ଜାଇନସ୍ ଶୈଳୀଗତ ରଚନା-ବିଧାନର ସାମ୍ୟ ଶରୀର ଗଠନ ସହିତ ଦେଖାଇଛନ୍ତି । ଦେହର ବିଭିନ୍ନ ଅବୟବ ସଦୃଶ ମୂଳ ସ୍ଥାନରୁ ବିଚ୍ୟୁତ ବା ବିଚ୍ଛିନ୍ନ ହେଲେ ସେଗୁଡ଼ିକର କୌଣସି ମହତ୍ତ୍ୱ ନ ଥାଏ ଓ ସାମୂହିକ ସୌନ୍ଦର୍ଯ୍ୟ ଛିନ୍ନ ଭିନ୍ନ ହୋଇଯାଏ ; କିନ୍ତୁ ଏକତ୍ର କଲେ ସେଗୁଡ଼ିକ ଏକ ସମ୍ପୂର୍ଣ୍ଣ ଶରୀର ଗଠନ କରନ୍ତି । ସେହିପରି କୌଣସି ରଚନାର ଶୈଳୀଗତ ତତ୍ତ୍ୱକୁ ଯଦି ଗୋଟିକୁ ଅନ୍ୟଠାରୁ ଅଲଗା କରି ଦିଆଯାଏ, ତେବେ ତାହାର ଔଦାତ୍ତ୍ୟ ଲୋପ ପାଏ ; ମାତ୍ର ଏଥିରେ ଶୈଳୀଗତ ସାମଞ୍ଜସ୍ୟ ବିଧାନ କରିଗଲେ ସେହି କୃତି ଗରିମାମୟ ହୋଇଉଠେ । ଏହି ଆବୟବିକ ପୂର୍ଣ୍ଣତା ବା ସାମଞ୍ଜସ୍ୟ ଉପରେ ଔଦାତ୍ତ୍ୟ ନିର୍ଭର କରେ । ଶବ୍ଦସଜ୍ଜା ବିଷୟରେ ସଚେତନ ଥିଲେ ନିମ୍ନ କୋଟିର କବି ଓ ଲେଖକମାନେ ଗୌରବ ଅର୍ଜନ କରିପାରନ୍ତି । ଅତି ସାଧାରଣ ଓ ପରିଚିତ ହେଲେ ମଧ୍ୟ ନିର୍ବାଚିତ ଶବ୍ଦାବଳୀ

ଦ୍ୱାରା ଲଞ୍ଜାଇନସ୍ ଆମ ଉପରେ ତାଙ୍କର ମନ୍ତ୍ରଶକ୍ତିର ପ୍ରଭାବ ବିସ୍ତାର କରିଥାନ୍ତି । ଏଣୁ ସନ୍ତାନମାନଙ୍କର ନିଧନ ପରେ ହେରାକ୍ଲସ୍ ଯେତେବେଳେ କହୁଛି — ମୋ ଜୀବନ ଦୁଃଖରେ ଭରି, ଅଧିକ ନିମନ୍ତେ ଆଉ ନାହିଁ ତହିଁ ସ୍ଥାନ— ଏଠାରେ ଶବ୍ଦଗୁଡ଼ିକ ଅତି ସାଧାରଣ ହେଲେ ମଧ୍ୟ ଏକ ସୁନ୍ଦର ଢଙ୍ଗରେ ଢ଼ଳା ହେବା ଯୋଗୁ ସେଥିରେ ଔଦାତ୍ତ୍ୟ ଅବତରଣ କରିଛି । ବୃଷଭ ଦ୍ୱାରା ତାଡ଼ିତ ଦର୍ସର ବର୍ଣ୍ଣନାରେ ପରିସ୍ଥିତି ସ୍ୱୟଂ ଗମ୍ଭୀର ; ମାତ୍ର ଘଟଣାକୁ ତ୍ୱରାନ୍ୱିତ ନ କରିବାକୁ ଭାଷା ପ୍ରୟୋଗ କରାଯାଇଥିବାରୁ ସେହି ବର୍ଣ୍ଣନା ଶକ୍ତି ଲାଭ କରିଛି । ଏଠାରେ ପ୍ରତ୍ୟେକ ଶବ୍ଦ ଉପରେ ଗୁରୁତ୍ୱ ଦେବା ସଙ୍ଗେ ସମୟକୁ ବିଳମ୍ବିତ କରିଦିଆଯାଇଛି । ଫଳରେ ଉନ୍ନତ ଔଦାତ୍ତ୍ୟ-ଶିଖର ଉଦ୍ଦେଶ୍ୟରେ ଏହା ଧୀରେ ଧୀରେ ଅଗ୍ରସର ହୋଇଛି ।

ସମୀକ୍ଷକଙ୍କ ସାଫଲ୍ୟ—

ଉପର୍ଯ୍ୟୁକ୍ତ ଆଲୋଚନାରୁ ଏକଥା ସ୍ପଷ୍ଟ ଯେ ଲଞ୍ଜାଇନସ୍ ଶୈଳୀ ସମ୍ପର୍କରେ ନୂତନ ଆଲୋକପାତ କରିଛନ୍ତି । ପୂର୍ବବର୍ତ୍ତୀ ଆଲୋଚକମାନେ ତାଙ୍କ ଭଳି ସାଙ୍ଗୋପାଙ୍ଗ ଆଲୋଚନା କରିନାହାନ୍ତି । ସେମାନଙ୍କ ଆଲୋଚନା ଅସମ୍ପୂର୍ଣ୍ଣ ଓ ପରମ୍ପରାନୁମୋଦିତ । ଲଞ୍ଜାଇନସ୍ଙ୍କ ଆଲୋଚନା ସମ୍ପୂର୍ଣ୍ଣ ଅଭିନବ ଓ ମୌଳିକ ଦୃଷ୍ଟିଭଙ୍ଗୀର ପରିଚୟ ଦିଏ । ସେ ବିଷୟର ଗଭୀରତା ସ୍ପର୍ଶ କରିପାରିଛନ୍ତି । ମନୁଷ୍ୟର ସମ୍ପୂର୍ଣ୍ଣ ସ୍ୱଭାବ ତାଙ୍କ ଆଲୋଚନାରେ ଆତ୍ମପ୍ରକାଶ କରିଛି । କଳ୍ପନା ଓ ସମ୍ବେଗ—ଆତ୍ମାରୁ ଉତ୍ସାରିତ ହୁଏ । ସେଗୁଡ଼ିକ ନିସର୍ଗଦତ୍ତ ଓ ଏହି ନୈସର୍ଗିକ ଦାନ ଯେତେବେଳେ ପାଠକ ବା ଶ୍ରୋତା ନିକଟକୁ ସମ୍ପ୍ରେଷିତ ହୁଏ ସେତେବେଳେ ବୈଦ୍ୟୁତିକ ପ୍ରଭାବ ସୃଷ୍ଟି କରେ, ଅନ୍ୟ ପକ୍ଷରେ ମଧ୍ୟ ଏକ ତାତ୍‌କାଳିକ ସ୍ପନ୍ଦନ ସୃଷ୍ଟି କରେ । କବି-ଆତ୍ମା ସହିତ ପାଠକ ଆତ୍ମାର ସଂଯୋଗ ଅଛି, କାରଣ ହୃଦୟର ବାଣୀ ହୃଦୟରେ ନିଶ୍ଚୟ ପ୍ରବେଶ କରେ । ଲଞ୍ଜାଇନସ୍ଙ୍କ ସମାଲୋଚନାର ଏହାହିଁ ବୈଶିଷ୍ଟ୍ୟ । ପାଠକ ଓ କବି ମଧ୍ୟରେ ହୃଦୟ-ସମ୍ବାଦ ବା ମିଳନର ମୁଖ୍ୟ ହେତୁ ହେଲା ଏଇ

ସମ୍ବେଗ ଓ ଏହା ସାର୍ବଜନୀନ ବ୍ୟାପାର । ଏହାକୁ ଅସ୍ୱୀକାର କରାଯାଇ ନ ପାରେ । କବିର ସମ୍ବେଗକୁ ନ ବୁଝି ଓ ସମ୍ବେଗର ମୂଳସ୍ରୋତକୁ ପ୍ରଶଂସା ନ କରି ତାଙ୍କର କବିତାକୁ ଆସ୍ୱାଦନ କରିବା ଦୁଷ୍କର ।

ଲଞ୍ଜାଇନସ୍‌ଙ୍କ ଆଲୋଚନାର ଦ୍ୱିତୀୟ ପର୍ଯ୍ୟାୟ ହେଲା – କବି ବା ବକ୍ତା ନିମନ୍ତେ କଳାର ପ୍ରୟୋଜନ ଅବିସମ୍ବାଦିତ । ଅଳଙ୍କରଣ ପାଇଁ ସେ ଅଳଙ୍କାର ପ୍ରୟୋଗ ଉପରେ ଗୁରୁତ୍ୱ ଦେଇ ନାହାନ୍ତି । ମାନବୀୟ ସମ୍ବେଗ ପ୍ରତି ସେଗୁଡ଼ିକର ଆବେଦନ ରହିବ ବୋଲି ସେ ଚାହିଁଛନ୍ତି । ଏହା ଅଳଙ୍କାର ପ୍ରୟୋଗର ମନସ୍ତାତ୍ତ୍ୱିକ ଦିଗ ପ୍ରତି ନିର୍ଦ୍ଦେଶ ଦିଏ । ଶୈଳୀ ପଛରେ ସମ୍ବେଗର ଅନ୍ୟ ଶକ୍ତି ରହିଛି, ଏଥିରେ ଔଦାତ୍ତ୍ୟ ଆସେ ଯେତେବେଳେ ତାହା ସମ୍ବେଗ ଦ୍ୱାରା ପରିପୁଷ୍ଟ ହୁଏ । ଏହା ମଧ୍ୟ ସମୁନ୍ନତ ଭାବନାର ଅପେକ୍ଷା ରଖେ । ଏ ଦୁଇଟି—ସମ୍ବେଗ ଓ ସମୁନ୍ନତ ଭାବନା – ଏକ ନୈସର୍ଗିକ ଅଭିବ୍ୟକ୍ତି ଲୋଡ଼ନ୍ତି, ଯେଉଁଥିରେ କଳାର ପ୍ରୟୋଜନ ଥାଏ । ଯଥୋଚିତ ଶବ୍ଦସଜ୍ଜା ବିନା ଯାଦୁକରୀ ପ୍ରଭାବ ସୃଷ୍ଟି ହୋଇପାରେ ନାହିଁ, ଏହାହିଁ ଲଞ୍ଜାଇନସ୍‌ଙ୍କର ନିର୍ଦ୍ଦେଶ—ଯେତେ ସମୀକ୍ଷା ସମୃଦ୍ଧ ଓ ଅଗ୍ରଗାମୀ ହେଲେ ମଧ୍ୟ ଏହାକୁ କୌଣସି ଯୁଗରେ ଅବହେଳା କରାହେବ ନାହିଁ ।

ଲଞ୍ଜାଇନସ୍‌ଙ୍କ ରୋମାଣ୍ଟିକ୍ ଉନ୍ମାଦନା ସ୍ୱେଚ୍ଛାଚାରୀ ଶୃଙ୍ଖଳାହୀନତା ଓ ଅକଳ୍ପିତ ସ୍ୱାଧୀନତା ସ୍ୱୀକାର କରେ ନାହିଁ । କ୍ଲାସିକାଲ୍ ଶୃଙ୍ଖଳା ସହିତ ସମ୍ପର୍କ ହେତୁ ତାଙ୍କର ରୋମାଣ୍ଟିସିଜମ୍ ସ୍ୱଚ୍ଛ ଓ ଉଜ୍ଜ୍ୱଳ । ସେ ରୂପର ସୌନ୍ଦର୍ଯ୍ୟରେ ନ ଭୁଲି ଆତ୍ମାର ସୌନ୍ଦର୍ଯ୍ୟ ଅବଲୋକନ କରିଛନ୍ତି । ସେ ଆତ୍ମା ଉପରେ ଗୁରୁତ୍ୱ ଦେଇଛନ୍ତି ଯାହା ରୂପ ପଛରେ ଲୁକ୍‌କାୟିତ ଓ ଏ ଦୃଷ୍ଟିରୁ ସେ ଜଣେ ରୋମାଣ୍ଟିକ୍ ।

ଲଞ୍ଜାଇନସ୍ ପ୍ରତିଭା ଓ ଆବେଗଶୂନ୍ୟ କଠିନ ପରିଶ୍ରମ ମଧ୍ୟରେ

ସମତା ରକ୍ଷା କରିପାରିଥିଲେ । ସମାଲୋଚନାରେ ଯାହା ଆଧୁନିକ ବୋଲି ବିବେଚିତ ସେ ତାହାର ବାର୍ତ୍ତାବହ ଥିଲେ । ତାଙ୍କର ସମାଲୋଚନା ରୂପଗତ ନୁହେଁ, ଆତ୍ମିକ । ସେ ନିର୍ଯାସ ପ୍ରତି ଅଧିକ ଆଗ୍ରହୀ ଥିଲେ, ସାହିତ୍ୟର ରୂପ-ପ୍ରତି ନୁହେଁ ପ୍ରେରଣା ଓ ଶୃଙ୍ଖଳାର ମଧୁର ସମନ୍ୱୟ ତାଙ୍କଠାରେ ଘଟିଥିଲା । ସର୍ଜନାତ୍ମକ କୃତିରେ କଳ୍ପନା ଓ ଅନୁଭବର ଭୂମିକା ସମ୍ବନ୍ଧରେ ତାଙ୍କର ଧାରଣା, ସାହିତ୍ୟର ବ୍ୟାଖ୍ୟା ଓ ରସାସ୍ୱାଦନରେ ତାଙ୍କର ଉଦାର ଦୃଷ୍ଟିଭଙ୍ଗୀ ନିଃସନ୍ଦେହ ରୂପେ ସମାଲୋଚନା କ୍ଷେତ୍ରରେ ଆଧୁନିକ ଥିଲା—ଯାହା ବହୁଯୁଗ ଧରି ଶୁଷ୍କ ଓ ରୂପଗତ ସମାଲୋଚନା ପରେ ତାଙ୍କ ରଚନାରେ ପ୍ରକାଶ ପାଇଥିଲା ।

ପ୍ଲାଟୋ ଓ ଆରିଷ୍ଟୋଟଲଙ୍କଠାରେ ଯେଉଁ ବିଶେଷତ୍ୱ ଥିଲା ଲଞ୍ଜାଇନସ୍ ତାହାର ଉତ୍ତରାଧିକାରିତ୍ୱ ପ୍ରାପ୍ତ ହୋଇଥିଲେ । ଗ୍ରୀକ୍ ସାହିତ୍ୟକୁ-ଭିତ୍ତି କରି ଆରିଷ୍ଟୋଟଲଙ୍କ ଭଳି ସେ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ଗ୍ରହଣ କରିଥିଲେ । ସମାଲୋଚନାରେ ସେ ଅବରୋହ, ମନସ୍ତାତ୍ତ୍ୱିକ ଓ ଐତିହାସିକ ପଦ୍ଧତି ଅନୁସରଣ କରିଥିଲେ ; ମାତ୍ର ତାଙ୍କଠାରେ ମଧ୍ୟ ସେହି ଆଧ୍ୟାତ୍ମିକ ଔତ୍ସୁକ୍ୟ ଓ ପ୍ଲାଟୋଙ୍କ ଆଦର୍ଶବାଦର ସମନ୍ୱୟ ଘଟିଥିଲା । ବିପରୀତ ଗୁଣାବଳୀର ଏହି ଅଦ୍ଭୁତ ସମନ୍ୱୟ ସାହିତ୍ୟ ସମାଲୋଚନାର ଇତିହାସରେ ତାଙ୍କୁ ଏକ ବିଶିଷ୍ଟ ସ୍ଥାନ ପ୍ରଦାନ କରିଛି । ସାହିତ୍ୟ ସମ୍ବନ୍ଧରେ କେତେକ ମୌଳିକ ସୌନ୍ଦର୍ଯ୍ୟ ତାତ୍ତ୍ୱିକ ସତ୍ୟ ପ୍ରକାଶ କରି ସେ ଏକ ସ୍ଥାୟୀ ଓ ଉଦ୍ଦୀପନାମୟ ପ୍ରଭାବ ପକାଇ ପାରିଛନ୍ତି । ଉଦାତ୍ତ ତତ୍ତ୍ୱ ସନ୍ଦର୍ଭରେ ସେ କୌଣସି ଅପ୍ରୟୋଜନ ବିଷୟ ଆଲୋଚନା କରି ନାହାନ୍ତି, ଯାହା ପ୍ରାଣପୂର୍ଣ୍ଣ ଓ ଉପାଦେୟ — ସାହିତ୍ୟର ସାର୍ବଜନୀନ କଳାମୂଲ୍ୟ ଉପରେ ଲକ୍ଷ୍ୟ ସ୍ଥିର ରଖି ଏକ ଅନନ୍ୟ ସାଧାରଣ ରୀତିରେ ତାହାକୁ ଅଭିବ୍ୟକ୍ତ ଦେଇଛନ୍ତି । ପ୍ଲାଟୋଙ୍କ ଭଳି ତାଙ୍କର ସମୀକ୍ଷା ଉଚ୍ଚକୋଟିର ରୂପକ ଓ କାବ୍ୟିକ ଅଭିବ୍ୟକ୍ତିରେ ସମୃଦ୍ଧ ।

ଲଞ୍ଜାଇନସ୍ କବିତାର ଉଦ୍‌ବୋଧନାତ୍ମକ ଗୁଣ ଉପରେ ଗୁରୁତ୍ୱ

ଦେଇଛନ୍ତି । ଔଦାତ୍ତ୍ୟ କବି ବା ଲେଖକର ଶକ୍ତିକୁ ଦୈବୀ ଉନ୍ମାଦନାରେ ଉଦ୍-ଭାସିତ କରିଦଏ—ଏହି ପ୍ରକାଶ ବା କଳ୍ପନାତତ୍ତ୍ୱ ହେଲା ରୋମାଣ୍ଟିକ୍ । ସେ ବସ୍ତୁନିଷ୍ଠକୁ ଗ୍ରହଣ ନ କରି ଆବେଗକୁ ପ୍ରାଧାନ୍ୟ ଦେଇଛନ୍ତି । ଏଇ ଭାବେ ସେ ନବ୍ୟରୋମାଣ୍ଟିକ୍ ତତ୍ତ୍ୱର ପ୍ରଥମ ବ୍ୟାଖ୍ୟା କରିଛନ୍ତି ; ମାତ୍ର ଜଣେ ଆଳଂକାରିକ ହୋଇଥିବାରୁ ଏହାକୁ କ୍ଲାସିସିଜମ୍ ସହିତ ଯୋଡ଼ି ଦେଇଛନ୍ତି । ସେ ଆବେଗ ଉପରେ ଯୁକ୍ତିର ଅଙ୍କୁଶ ପ୍ରୟୋଗ କରି ତାହାକୁ ଶୃଙ୍ଖଳିତ କରିବାକୁ ଚାହିଁଛନ୍ତି । କେବଳ ପ୍ରେରଣା ଯଥେଷ୍ଟ ନୁହେଁ ; ଅଧ୍ୟୟନ ଓ କୌଶଳର ପ୍ରୟୋଜନକୁ ସେ ଅପରିହାର୍ଯ୍ୟ ସ୍ୱୀକାର କରିଛନ୍ତି ।

ସାହିତ୍ୟରେ ଅପୂର୍ଣ୍ଣତା ବା ଅଭାବ ଆଦିକୁ ସେ କ୍ଷମା ଦେବାକୁ ପ୍ରସ୍ତୁତ କେବଳ ଏଇ ସର୍ତ୍ତରେ ଯେ ସେଇ ଅପୂର୍ଣ୍ଣତା ଔଦାତ୍ତ୍ୟ ସୃଷ୍ଟି କରି-ପାରୁଥିବ । ନିର୍ଦ୍ଦୋଷ ହେବାରେ କି ଲାଭ ଯଦି ତହିଁରେ ଔଦାତ୍ତ୍ୟ ନାହିଁ ? ଏହା ସାହିତ୍ୟରେ ଏକ ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀ । ସେ ତେଣୁ ନିର୍ଦ୍ଦୋଷ ଆପୋଲୋନିୟସ୍‌ଙ୍କଠାରୁ ସଦୋଷ ହୋମରଙ୍କୁ ଉଚ୍ଚସ୍ଥାନ ଦେଇଛନ୍ତି ।

ସାହିତ୍ୟର ନାଟକୀୟ ଭୂମିକା ସମ୍ପର୍କରେ ତାଙ୍କର ଧାରଣା ଆଧୁନିକ । ମନୁଷ୍ୟର ସମଗ୍ର ସତ୍ତାକୁ ଯେଉଁ ସାହିତ୍ୟ ପ୍ରଭାବିତ କରେ ତାହା ହିଁ ସାହିତ୍ୟ ରୂପେ ପରିଗଣିତ ହୁଏ । ଉଦାତ୍ତ ତତ୍ତ୍ୱ ବ୍ୟାଖ୍ୟା କରି ସମୀକ୍ଷା ଜଗତକୁ ସେ ଏକ ବିଶେଷ ଦାନ ଦେଇ ଯାଇଛନ୍ତି । ଅନୁକରଣ ସିଦ୍ଧାନ୍ତ ସହିତ ଯେପରି ପ୍ଲାଟୋଙ୍କ ନାମ ଓ ବିରେଚନ ସିଦ୍ଧାନ୍ତ ସହିତ ଆରିଷ୍ଟୋଟ୍‌ଲଙ୍କ ନାମ ଜଡ଼ିତ ଉଦାତ୍ତଶୈଳୀ ସହିତ ସେହିପରି ଲଞ୍ଜାଇନସ୍‌ଙ୍କ ନାମ ଜଡ଼ିତ । ମାଥିଉ ଆର୍‌ନୋଲ୍‌ଡଙ୍କ ପ୍ରବର୍ତ୍ତିତ ମହତ୍ ଶୈଳୀ **(Grand style)** ତାଙ୍କଠାରୁ ପ୍ରେରଣା ଲାଭ କରିଛି । କାବ୍ୟର ରୂପ ନୁହେଁ, ରସହିଁ ଆମର ଲୋଡ଼ା – ଏ କଥା କହିବା ବେଳେ ଜଣାଯାଏ ସେ କାବ୍ୟର ରୂପରେ ସନ୍ତୁଷ୍ଟ ନ ଥିଲେ । ସେ ତତ୍‌କାଳୀନ ଗ୍ରୀକ୍ ସାହିତ୍ୟ ଉପରେ ନିଜର ତୀବ୍ର ଘୃଣା ପ୍ରକଟ କରିଥିଲେ । ଏକ ଦୃଷ୍ଟିରୁ ତାଙ୍କୁ ନିର୍ବିବାଦରେ ଅପ୍ରତିମ କୁହାଯାଇ

ତାରେ—ସମାଲୋଚନାରେ ସେ ଉଭୟ ତାତ୍ତ୍ୱିକ ଓ ପ୍ରାୟୋଗିକ ଦୃଷ୍ଟିଭଙ୍ଗୀ ପ୍ରଦର୍ଶନ କରିଛନ୍ତି ଓ ପ୍ରତ୍ୟେକ ଯୁକ୍ତିକୁ ତନ୍ନ ତନ୍ନ କରି ପ୍ରୟୋଗବାଦୀ ଦୃଷ୍ଟିରୁ ଉଦାହରଣ ଦ୍ୱାରା ପ୍ରତିଷ୍ଠା କରିଛନ୍ତି । ତାଙ୍କର ତତ୍ତ୍ୱ ବା ସିଦ୍ଧାନ୍ତ ପୂର୍ବସୂରୀମାନଙ୍କ ତତ୍ତ୍ୱର ପ୍ରତିଫଳନ ନୁହେଁ, ତାହା ମାନବୀୟ ସ୍ୱଭାବ ସହିତ ଦୃଢଭାବେ ମୂଳବଦ୍ଧ । ଏଣୁ ପରବର୍ତ୍ତୀ କାଳ ନିମନ୍ତେ ତାହା ଅତ୍ୟନ୍ତ ମୂଲ୍ୟବାନ୍ । ମନର ଔଦାତ୍ତ୍ୟ ବିନା ଉଚ୍ଚ ସାହିତ୍ୟ ଏକ ସ୍ୱପ୍ନ, କାରଣ କ୍ଷୁଦ୍ର ମନ ସାହିତ୍ୟକୁ କେବେହେ ଉଚ୍ଚତା ପ୍ରଦାନ କରିପାରେ ନାହିଁ । ମହତ୍-ମନା ବ୍ୟକ୍ତି ହିଁ ମହତ୍ ସାହିତ୍ୟ ସୃଷ୍ଟି କରିପାରେ । ସେଥିପାଇଁ ଭାରତୀୟ କାବ୍ୟ-ବିଶ୍ୱାସ ଥିଲା—ନାନୃଷିଃ କୁରୁତେ କାବ୍ୟମ୍ । ଉଦାତ୍ତ ଶୈଳୀର ଲେଖକଙ୍କ ରଚନାରେ ତ୍ରୁଟି-ବିଚ୍ୟୁତି ଥାଇପାରେ ; ମାତ୍ର ରଚନାର ଉଦାତ୍ତ ଗୁଣ ସନ୍ନିପାତ ହେତୁ ସେଗୁଡ଼ିକ ସେଥିରେ ନିମଜ୍ଜିତ ହୋଇଯାନ୍ତି । ଉଦାତ୍ତ-ରଚନାର ଲେଖକ ଅମର, ଅନ୍ୟମାନେ ସାଧାରଣ ମନୁଷ୍ୟ ମାତ୍ର—ଉଦାତ୍ତ ଶୈଳୀର ଲେଖକଙ୍କୁ ସେ କେତେ ମହାନ୍ ମନେ କରୁଥିଲେ ଏଥିରୁ ତାହାର ପ୍ରମାଣ ମିଳେ । ଲଞ୍ଜାଇନସ୍ ଦୃଢ଼ ଭାବରେ ବିଶ୍ୱାସ କରନ୍ତି ଯେ ଆଜି ମଧ୍ୟ କବି ଓ ଲେଖକମାନେ ମନରେ ଉଦାତ୍ତ ଭାବନା ପୋଷଣ କରି ପାରନ୍ତି । ମନର ପ୍ରଶାନ୍ତି, ଋଷିର ନେତ୍ର ଓ ଉଦାର ବିଶ୍ୱଜନୀନ ଭାବ ଆଜି ଆମ ଭିତରୁ ଉଭେଇ ଯାଉଛି । ଆତ୍ମାର ଶୁଦ୍ଧତା, ମହୋଦାରତା, ମନର ଊର୍ଜା ସର୍ବଦା ରକ୍ଷା କରିବାକୁ ହେବ । ଯାହା ମହତ୍ ଓ ଶାଶ୍ୱତ ତାହାର ଉପାସନା ଓ ବସୁଧୈବକୁଟୁମ୍ବକମ୍ ନୀତି ଅନୁସରଣ କଲେ ଲେଖକମାନେ ସାହିତ୍ୟରେ ଉଦାତ୍ତ-ଭାବନାର ଆବିର୍ଭାବ ଘଟାଇ ପାରିବେ । ଏଥିପାଇଁ ସେ ଆତ୍ମାର ସ୍ୱାଧୀନତା ଓ ନୈତିକ ବଳ ଉପରେ ଗୁରୁତ୍ୱ ଦେଇଛନ୍ତି । ଏହାର ଅଭାବ ଘଟିଥିବାରୁ ସେ ସ୍ୱ ସମୟକୁ ନୈତିକ ମହାମାରୀଗ୍ରସ୍ତ ବୋଲି କହିବାକୁ କୁଣ୍ଠିତ ହୋଇ ନାହାନ୍ତି ।

ସାହିତ୍ୟର ଆଦର୍ଶ କ'ଣ ହୋଇପାରେ ଏ ବିଷୟରେ ପ୍ରାଚୀନ କାଳରୁ ଆଲୋଚନା ଚାଲି ଆସିଛି । ଲଞ୍ଜାଇନସ୍ ସେଇ ମୌଳିକ ପ୍ରଶ୍ନକୁ

ଆଦୌ ବିସ୍ମୃତ ହୋଇ ନାହାନ୍ତି । ସେ ଅସଂଖ୍ୟ ଶତ୍ତରେ ସେଇ ପ୍ରଶ୍ନର ସମାଧାନ ଦେଇଛନ୍ତି—ତାହା ହେଲା ଔଦାତ୍ତ୍ୟ । ସଂକ୍ଷେପରେ, ଲଞ୍ଜାଇନସ୍-ଙ୍କର ଅଭିପ୍ରାନ୍ତ ମତ ହେଲା—ଶ୍ରେଷ୍ଠ ସାହିତ୍ୟ ଆମର ମନକୁ ଆଲୋଡ଼ିତ କରିବ, ଉତ୍ତେଜିତ କରିବ, ମହତ୍ତର କରିବ, ଊର୍ଦ୍ଧ୍ୱତର ସତ୍ତାରେ ଘେନିଯିବ ଓ ଭଗବତ ଉନ୍ମତ୍ତତାରେ ଆବିଷ୍ଟ କରିବ । ସମାଲୋଚକଙ୍କର କର୍ତ୍ତବ୍ୟ ହେଲା, ଶ୍ରେଷ୍ଠ ସାହିତ୍ୟ ମଧ୍ୟରେ ଏଇ ଗୁଣ ଗୁଡ଼ିକୁ ଆବିଷ୍କାର କରି ଅନ୍ୟମାନଙ୍କୁ ଦେଖାଇ ଦେବା । ଉଚ୍ଚ ସାହିତ୍ୟ ପାଠକର ମନକୁ ଆନନ୍ଦ-ଲୋକରେ ଅଭିସାର କରାଏ, କ୍ଷୁଦ୍ର ପରିସରରୁ ବୃହତ୍ ପରିସରର ଆନନ୍ଦଲୋକକୁ ଘେନି ଯାଏ । ମନୁଷ୍ୟ ସାଧାରଣରେ ସୀମାକୁ ଅତିକ୍ରମ କରି ବିରାଟ ହେବାକୁ ଚାହେଁ । ଉଦାତ୍ତ ତାହାର ଆତ୍ମାକୁ ସାଧାରଣ ସ୍ତରରୁ ଊର୍ଦ୍ଧ୍ୱକୁ ଉତ୍ତୋଳନ କରି ଦୈବିକ-ସମ୍ପର୍କ ଘଟାଇ ଦିଏ । ସହୃଦୟ ଆତ୍ମାର ଉଦ୍ଦୀପ୍ତି ବା ସମୁନ୍ନତି ଘଟାଇବା ଉଦାତ୍ତ-ରଚନାର ଲକ୍ଷ୍ୟ । ମହାକାଳର ପାଠକର ବିଚାର ଓ ରସବୋଧ ଉପରେ ତାଙ୍କର ପରମ ବିଶ୍ୱାସ ଥିଲା । ସେଥିଲାଗି ସେ ମହାନ୍ ରଚନାର ପାଠକମାନଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି ।

ଲଞ୍ଜାଇନସ୍ ଓ ଭାରତୀୟ ଆଚାର୍ଯ୍ୟ—

ଭାରତୀୟ କାବ୍ୟଶାସ୍ତ୍ରରେ ଉଦାତ୍ତ ପରିକଳ୍ପନାର ସୂଚନା ମିଳି-ଥିଲେହେଁ ଏକସ୍ଥାନରେ ଓ ସମଗ୍ର ରୂପରେ ତାହାର ଆଲୋଚନା କରାଯାଇ ନାହିଁ । ଧୀରୋଦାତ୍ତ ନାୟକ, ବୀର ରସ, ଅଦ୍ଭୁତ ରସ, ଓଜଃ ଗୁଣ ଓ ଗୌଡ଼ୀ ରୀତି ଆଦି ପ୍ରସଙ୍ଗରେ ଉଦାତ୍ତ ସ୍ୱରୂପର ଉଲ୍ଲେଖ ମିଳେ । ଭାରତର ମହାକବିମାନଙ୍କ ରଚନାରେ ଉଦାତ୍ତ ଭାବମୂଳକ ଏପରି ଛସମାନ ରହିଛି ଯାହା ପାଠକର ଆତ୍ମ-ସ୍ଫୀତି ଘଟାଇ ଆଶ୍ଚର୍ଯ୍ୟଜନିତ ଆନନ୍ଦର ନିଷ୍ପତ୍ତି ସାଧନ କରିଥାଏ । ଯେତେବେଳେ ଆମେ ପାଠ କରୁ—

ବେଦାହମେତଂ ପୁରୁଷଂ ମହାନ୍ତ ମାଦିତ୍ୟବର୍ଣ୍ଣଂ
ତମସଃ ପରସ୍ତାତ୍
ତମେବ ବିଦିତ୍ୱାତିମୃତ୍ୟୁମେତି ନାନ୍ୟଃ
ପନ୍ଥା ବିଦ୍ୟତେଽୟନାୟ ।

—ଅର୍ଥାତ୍, ମୁଁ ସେହି ମହାନ୍ ପୁରୁଷଙ୍କୁ, ପୂର୍ଣ୍ଣ ପରମେଶ୍ୱରଙ୍କୁ ସୂର୍ଯ୍ୟସମାନ ତେଜସ୍ୱୀ ଓ ଅନ୍ଧକାରର ପରପାରରେ, ଏଇପରି ସାକ୍ଷାତ କରୁଛି । ତାହାଙ୍କୁ ଜାଣି ବ୍ୟକ୍ତି ମୃତ୍ୟୁକୁ ଅତିକ୍ରମ କରିଯାଏ । ଏହାଠାରୁ ଅତିରିକ୍ତ ମୋକ୍ଷ ପ୍ରାପ୍ତିର ଅନ୍ୟ କୌଣସି ମାର୍ଗ ନାହିଁ । ଏହି ଭାବ ମହତେ। ମହୀୟାନ୍; ଏହା ଜୀବ-ଆତ୍ମାର ବିରାଟତା ବା ମହାନତାର ପ୍ରତିଧ୍ୱନି । ଆତ୍ମାର ବିରାଟୀ-କରଣ ଉଦାତ୍ତ-ଭାବନାର ଲକ୍ଷ୍ୟ । ଏହି ରଚନା ସେହିପରି ଉଦାତ୍ତ-ଉଦ୍‌ବୋଧକ ।

ମମ୍ମଟ 'କାବ୍ୟ ପ୍ରକାଶ'ରେ ଉଦାତ୍ତର ସର୍ବାତିଶାୟୀ ପ୍ରଭାବର ଜୟଗାନ କରିଛନ୍ତି । କବିର କୃତିକୁ ସେ ହ୍ଲାଦୈକମୟୀ କହିଛନ୍ତି । କାବ୍ୟ-ପ୍ରୟୋଜନ ସମ୍ବନ୍ଧରେ ଉଲ୍ଲେଖ କରି 'ସଦ୍ୟଃପରନିର୍ବୃତ୍ତି'କୁ ସେ 'ସକଳ ପ୍ରୟୋଜନମୌଳିଭୂତ' ରୂପେ ସ୍ୱୀକାର କରିଛନ୍ତି । ସେ····ମଧ୍ୟ କହିଛନ୍ତି ଯେ, କାବ୍ୟର ରସାସ୍ୱାଦନରୁ ଯେଉଁ ଆନନ୍ଦୋପଲବ୍ଧି କରାଯାଏ ତହିଁରେ 'ବେଦ୍ୟାନ୍ତର' ବିଗଳିତ ହୋଇଯାଏ ଓ ସେ ସମୟରେ ଆମେ ସବୁ କିଛି ଭୁଲିଯାଉ । ଲଞ୍ଜାଇନସ୍‌ଙ୍କ 'ଆନନ୍ଦାତିରେକ' ଓ ମମ୍ମଟଙ୍କ 'ବିଗଳିତ ବେଦ୍ୟାନ୍ତର' ମଧ୍ୟରେ ସାମ୍ୟ ପରିଲକ୍ଷିତ ହୁଏ ।

ଭାରତୀୟ ଅଳଙ୍କାରଶାସ୍ତ୍ରର ଧ୍ୱନିବାଦ ସହିତ ତତ୍ତ୍ୱ ଦୃଷ୍ଟିରୁ ଲଞ୍ଜାଇନସ୍‌ଙ୍କ ଉଦାତ୍ତ ତତ୍ତ୍ୱର ମଧ୍ୟ ସାଦୃଶ୍ୟ ପରିଲକ୍ଷିତ ହୁଏ । ଉଭୟେ ବ୍ୟଞ୍ଜନା ଓ ସମୁନ୍ନତି ଉପରେ ଗୁରୁତ୍ୱ ଦିଅନ୍ତି । ଲଞ୍ଜାଇନସ୍‌ଙ୍କ ଉଦାତ୍ତ ତତ୍ତ୍ୱ

ଯେପରି ସାହିତ୍ୟ ବିଚାରର ଏକ ଅଭିନବ ପ୍ରୟାସ, ଭାରତୀୟ ଅଳଙ୍କାର ଶାସ୍ତ୍ରରେ ଧ୍ୱନିବାଦ (ବ୍ୟଞ୍ଜନା) ମଧ୍ୟ ସେହିପରି ଅଭିନବ ବୋଲି ସ୍ୱୀକୃତ । ଧ୍ୱନିବାଦର ମୂଳକଥା ବାଚ୍ୟାର୍ଥର ଅଜ୍ଞାତ ବିଷୟାନ୍ତରରେ ବ୍ୟଞ୍ଜନା, ଉଦାତ୍ତର ମୂଳକଥା ସମୁନ୍ନତ—ଯାହା ଆମକୁ ଉଚ୍ଚତର ସୌନ୍ଦର୍ଯ୍ୟ ଓ ଆବେଗର ଊର୍ଦ୍ଧ୍ୱଲୋକକୁ ନେଇଯାଏ । ତେଣୁ ଲଞ୍ଜାଇନସ୍‌ଙ୍କ ଉଦାତ୍ତ-ସିଦ୍ଧାନ୍ତକୁ ରସ-ଧ୍ୱନିବାଦର ଅନ୍ତର୍ଗତ କରାଯାଇପାରେ ।

ସାହିତ୍ୟ ଦର୍ପଣରେ 'ଉଦାତ୍ତ' ଏକ ଅଳଙ୍କାର ରୂପେ ସ୍ୱୀକୃତ । ଉଦାତ୍ତର ଲକ୍ଷଣ ଓ ଉଦାହରଣ—

ଲୋକାତିଶୟ ସମ୍ପତ୍ତି ବର୍ଣ୍ଣନୋଦାତ୍ତ ମୁଚ୍ୟତେ ।
ଯଦ୍‌ବାପି ପ୍ରସ୍ତୁତସ୍ୟାଙ୍ଗଂ ମହତାଂ ଚରିତଂ ଭବେତ୍ ।

ଅଲୌକିକ ସମ୍ପତ୍ତି, ଗୁଣ, ଅତିମାନୁଷ ଚରିତ, ଶୀଳ, କାର୍ଯ୍ୟ ଓ ସ୍ୱଭାବ ଇତ୍ୟାଦିକୁ ଉଦାତ୍ତ କୁହାଯାଏ । ବିଶ୍ୱନାଥ ଦୁଇଟି ଉଦାହରଣ ଦେଇଛନ୍ତି—

ଅଧଃକୃତାମ୍ଭୋଧରମଣ୍ଡଳାନାଂ ଯସ୍ୟାଂ
ଶଶାଙ୍କୋପଳ କୁଟ୍ଟିମାନାମ୍ ।
ଜ୍ୟୋତ୍ସ୍ନାନିପାତାକ୍ଷରିତାଂ ପୟୋଭିଃ
କେଳୀବନଂ ବୃଦ୍ଧିମୁଖୀକରୋତି ।

ଏଠାରେ ଲୋକରେ ଅସମ୍ଭବ ସମ୍ପତ୍ତି ବର୍ଣ୍ଣନା ଉଦାତ୍ତ ହୋଇ ଉଠିଛି ।

ନାଭି-ପ୍ରଭିନ୍ନାମ୍ବୁରୁହାସନେନ ସଂସ୍ତୂୟମାନଃ
ପ୍ରଥମେନଧାମ୍ନା ।
ଅମୁଂ ଯୁଗାନ୍ତୋଚିତଯୋଗନିଦ୍ରଃ
ସଂହୃତ୍ୟ ଲୋକାନ୍ ପୁରୁଷୋଽଧିଶେତେ ।

ଏଠାରେ ନାରାୟଣ ଚରିତ ବର୍ଣ୍ଣନ ଅଙ୍ଗୀଭୂତ ହୋଇଥିବାରୁ ସମୁଦ୍ରବର୍ଣ୍ଣନା ଉଦାତ୍ତ ହୋଇ ଉଠିଛି ।

ରସ ଗଙ୍ଗାଧର-ପ୍ରଣେତା ପଣ୍ଡିତରାଜ ଜଗନ୍ନାଥ ମଧ୍ୟ ଉଦାତ୍ତ ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି—"ଅଲୌକିକ ବସ୍ତୁ ଦର୍ଶନାଦି ଜନ୍ମା ବିକାସାଖ୍ୟୋ ବିସ୍ମୟଃ"—ଲୋକୋତ୍ତର କୌଣସି ବସ୍ତୁର ଦର୍ଶନ ଅଥବା ସ୍ମରଣ ଆଦିରୁ ଉତ୍ପନ୍ନ ହେଉଥିବା ବିକାସ (ଆଶ୍ଚର୍ଯ୍ୟ) ନାମକ ଚିତ୍ତବୃତ୍ତିକୁ ବିସ୍ମୟ କହନ୍ତି । ଏହି ବିସ୍ମୟ ନାମକ ଚିତ୍ତବୃତ୍ତି ଅଦ୍ଭୁତ ରସର ସ୍ଥାୟୀଭାବ । ବିଶ୍ୱନାଥ ବିସ୍ମୟର ସ୍ୱରୂପ ଦର୍ଶାଇଛନ୍ତି—

ବିବିଧେଷୁ ପଦାର୍ଥେଷୁ ଲୋକସୀମାତିବର୍ତ୍ତିଷୁ ।
ବିସ୍ଫାରଶ୍ଚେତସୋ ଯସ୍ତୁ ସ ବିସ୍ମୟ ଉଦାହୃତ ।

ବୀରରସର ସ୍ଥାୟୀଭାବ ହେଲା ଉତ୍ସାହ । ପଣ୍ଡିତରାଜ ଚିତ୍ତର ଔନ୍ନତ୍ୟକୁ ଉତ୍ସାହ କହନ୍ତି.............

ପରପରାକ୍ରମ-ଦାନାଦିସ୍ମୃତିଜନ୍ମା ଔନ୍ନତ୍ୟାଖ୍ୟ ଉତ୍ସାହଃ ।

ଅନ୍ୟର ପରାକ୍ରମ ତଥା ଦାନ ଆଦିର ସ୍ମରଣରୁ ଉତ୍ପନ୍ନ ହେଉଥିବା ଔନ୍ନତ୍ୟ ନାମକ ଚିତ୍ତବୃତ୍ତିକୁ ଉତ୍ସାହ କହନ୍ତି ।

କାବ୍ୟରେ ଅଲଙ୍କାର ବିଧାନ ସମ୍ବନ୍ଧରେ ଭାରତୀୟ ଆଚାର୍ଯ୍ୟମାନଙ୍କ ସହିତ ଲଞ୍ଜାଇନସ୍‌ଙ୍କ ମତବାଦର ପ୍ରଭୂତ ସାମ୍ୟ ପରିଲକ୍ଷିତ ହୁଏ । କାବ୍ୟରେ

ଅଳଙ୍କାର-ସନ୍ନିବେଶ ଏତେ ସ୍ୱାଭାବିକ ହେବା କଥା ଯେ 'ରସାକ୍ଷିପ୍ତ' କବିର କୌଣସି ସ୍ୱତନ୍ତ୍ର ପ୍ରୟାସ ବିନା ତାହା ସ୍ୱତଃ ଆବିର୍ଭୂତ ହୋଇଥିବ । କବିକୁ କୌଣସି ପ୍ରକାରେ ପୃଥକ୍ ପ୍ରଯତ୍ନ କରିବାକୁ ପଡ଼ିବ ନାହିଁ କି ଅଳଙ୍କାରର ଏତେ ଆଡ଼ମ୍ବର ରହିବ ନାହିଁ ଯାହା ଦ୍ୱାରା ପାଠକ ପ୍ରକୃତ ରସ-ସୌନ୍ଦର୍ଯ୍ୟ-ଠାରୁ ଦୂରେଇ ଯାଇ ତାହାର ପ୍ରଭାବରେ ମୁଗ୍‌ଧ ହେବେ । ଅଳଙ୍କାରର ଏହିପରି ଉଚିତ ସନ୍ନିବେଶକୁ ଆନନ୍ଦବର୍ଦ୍ଧନ ସ୍ୱୀକୃତି ଦେଇଛନ୍ତି—

ରସାକ୍ଷିପ୍ତତୟା ଯସ୍ୟ ବନ୍ଧଃ ଶକ୍ୟକ୍ରିୟୋ ଭବେତ୍

ଅପୃଥଗ୍ ଯତ୍ନନିର୍ବର୍ତ୍ତ୍ୟଃ ସୋଽଳଙ୍କାରୋ ଧ୍ୱନୌ ମତଃ ।

'ଅହଂପୂର୍ବିକୟା' ଆସି ଯେଉଁ ଅଳଙ୍କାର କାବ୍ୟରେ ସ୍ଥାନ ଲାଭ କରେ ଆନନ୍ଦବର୍ଦ୍ଧନ ତାହାକୁ ସାର୍ଥକ ଓ ସୁନ୍ଦର ଅଳଙ୍କାର କହିଛନ୍ତି । ଅଳଙ୍କାର-ସନ୍ନିବେଶ ଏପରି ହେବାକଥା ଯାହା ଦ୍ୱାରା ପାଠକ ଅନୁଭବ କରିବ ନାହିଁ ଯେ କବି ଅଳଙ୍କାର ପ୍ରୟୋଗ କରିବାକୁ ପ୍ରଯତ୍ନ କରିଛନ୍ତି । ଅନୁରୂପ ଭାବେ ଲଞ୍ଜାଇନସ୍ କାବ୍ୟରେ ଅଳଙ୍କାରର ସତ୍ତା ସ୍ୱୀକାର କରିଛନ୍ତି । ସେହି ଅଳଙ୍କାର କାବ୍ୟରେ ସର୍ବୋତ୍ତମ ପ୍ରଣୀତ ହୁଏ, ଯାହାର ପୃଥକ ସତ୍ତାର ସନ୍ଧାନ ପାଠକ ପାଇ ନଥାଏ—"ଏହା ଅଳଙ୍କାର", ପାଠକ ଏକଥା ଯେପରି ଜାଣି ନପାରେ । କବିତା ସହିତ ଅଳଙ୍କାର ଏପରି ମିଳିମିଶି ରହିଥାଏ ଯେ ପାଠକକୁ ତାହାର ପୃଥକ୍ ସତ୍ତାର ଆଭାସ ମଧ୍ୟ ମିଳି ନ ଥାଏ । ଏଥିରୁ ଜଣାଯାଏ, ଆନନ୍ଦବର୍ଦ୍ଧନ ଲଞ୍ଜାଇନସ୍‌ଙ୍କ ମତର ଅତି ନିକଟବର୍ତ୍ତୀ ।

ଲଞ୍ଜାଇନସ୍‌ଙ୍କ ଅଳଙ୍କାରୌଚିତ୍ୟ ଓ ଶବ୍ଦୌଚିତ୍ୟ ସହିତ ଭରତଙ୍କ ଔଚିତ୍ୟ ସିଦ୍ଧାନ୍ତର ମଧ୍ୟ ସାମଞ୍ଜସ୍ୟ ରହିଛି ।

ବିଶ୍ୱନାଥ କବିରାଜଙ୍କ ପୂର୍ବପୁରୁଷ ନାରାୟଣ ପଣ୍ଡିତ ଆଶ୍ଚର୍ଯ୍ୟରସକୁ ସମଗ୍ର ରସ-ପରମ୍ପରାର ପ୍ରକୃତ ବା ମୂଳରସ ସ୍ୱୀକାର କରନ୍ତି—

ତେଷେ ସାରଶ୍ଚମତ୍କାରଃ ସର୍ବାତ୍ରାପ୍ୟନୁଭୂୟତେ
ତସ୍ମାଦ୍‌ଭୁତମେବାହ କୃଷ୍ଣ ନାରାୟଣୋ ରସମ୍ ।

ଚମତ୍କାର ଚିତ୍ତ-ବିସ୍ତାର ରୂପରେ ଅଭିବ୍ୟକ୍ତ ହୋଇଥାଏ ଓ ଏହାର ଉଦାହରଣ ହେଲା ଅଦ୍ଭୁତରସ । ରସାନୁଭୂତି ଚିତ୍ତ-ବିସ୍ତାରର ଜନନୀ ହୋଇ-ଥିବାରୁ ଚମତ୍କାରରୂପିଣୀ ।

କାବ୍ୟଜନିତ ଆସ୍ୱାଦକୁ 'ଚମତ୍କାର୍' ଅର୍ଥରେ ଗ୍ରହଣ କରଯାଇଛି । ଆନନ୍ଦବର୍ଦ୍ଧନ କାବ୍ୟାସ୍ୱାଦ ଅର୍ଥରେ 'ଚମତ୍କୃତି' ଶବ୍ଦ ପ୍ରୟୋଗ କରିଛନ୍ତି – ଚେତଶ୍ଚମତ୍କୃତିବିଧାୟୀ । ଏହି ଆହ୍ଲାଦ ଅଦ୍ଭୁତ-ରସର ବିଶେଷତ୍ୱ । ଲଞ୍ଜାଇନସ୍‌ଙ୍କ ଉଦାତ୍ତ-ତତ୍ତ୍ୱ ସହିତ ଏହି ଚମତ୍କାରବାଦର ସାମ୍ୟ ପ୍ରଦର୍ଶନ କରଯାଇପାରେ ।

୦ ✻ ୦

# ଲଂଜାଇନସ୍‌ଙ୍କ ଉଦାତ୍ତ-ତତ୍ତ୍ୱ

ଅନୁବାଦ

# ୧

ସ୍ନେହାସ୍ପଦ ତେତେନ୍ତ୍ରିଆନୁସ୍, ତୁମର ସ୍ମରଣ ଥିବ, କୈକିଲିଉସଙ୍କ ଔଦାତ୍ତ୍ୟ-ସମ୍ବନ୍ଧୀୟ ନିବନ୍ଧ ଆମେ ଯେତେବେଳେ ଏକ ସଙ୍ଗେ ପାଠ କରିଥିଲେ, ସମଗ୍ର ବିଷୟର ଗୌରବ ଦୃଷ୍ଟିରୁ ଅନୁପଯୁକ୍ତ ବୋଲି ତାହା ଆମକୁ ଜଣା ପଡ଼ିଥିଲା । ଏଥିରେ ମୁଖ୍ୟ ଆଲୋଚ୍ୟ ବିଷୟର ଅଧିକାର ସଂପୂର୍ଣ୍ଣ ଅସଫଳ ଓ ପଠନଶ୍ରମ ନିମନ୍ତେ ଏହା ସ୍ୱଳ୍ପ ଲାଭଦାୟକ (ଯାହା ପ୍ରତ୍ୟେକ ଲେଖକର ମୁଖ୍ୟ ଉଦ୍ଦେଶ୍ୟ ହେବା ଉଚିତ) । ଯେ କୌଣସି ଶିଳ୍ପ ସମ୍ବନ୍ଧୀୟ ଆଲୋଚନା ଗ୍ରନ୍ଥରେ ଦୁଇଟି କଥା ଆବଶ୍ୟକ ପ୍ରଥମ, ଆଲୋଚ୍ୟ ବିଷୟର ସଂଜ୍ଞା ନିରୂପଣ; ଦ୍ୱିତୀୟରେ, (କ୍ରମରେ ଦ୍ୱିତୀୟ, ବାସ୍ତବରେ ଏହା ଅଧିକ ମହତ୍ତ୍ୱପୂର୍ଣ୍ଣ) ନିର୍ଦ୍ଦେଶ କରିବାକୁ ହେବ କିପରି ଓ କେଉଁ ପଦ୍ଧତି ଦ୍ୱାରା ଆମେ ନିଜେ ତାହାକୁ ଆୟତ୍ତ କରି ପାରିବା । ଅଉ ତଥାପି କୈକିଲିଉସ ସହସ୍ର ଦୃଷ୍ଟାନ୍ତ ଦ୍ୱାରା ଉଦାତ୍ତର ସ୍ୱରୂପ କ'ଣ ତାହା ବୁଝାଇବାକୁ ପ୍ରୟତ୍ନ କରିଛନ୍ତି, ସତେ ଯେପରି ଆମେ ଏ ବିଷୟରେ ପୂର୍ବାପର ଅଜ୍ଞାନ ଅନ୍ଧକାରରେ ଅଛୁ । ଔଦାତ୍ତ୍ୟର କେଉଁ ନିର୍ଦ୍ଦିଷ୍ଟ ସ୍ତର ଯାଏ ଆମେ ସ୍ୱପ୍ରକୃତି ଉନ୍ନୟନ କରିବାକୁ କିପରି ସମର୍ଥ ହେବୁ ସେ ପ୍ରଶ୍ନ, ସେ ଅଦରକାରୀ ଭାବି ପରିତ୍ୟାଗ କରିଛନ୍ତି । ଯାହାହେଉ, ତ୍ରୁଟି ବିଚ୍ୟୁତି ପାଇଁ ଆମେ ତାଙ୍କର ନିନ୍ଦା କରିବା ଅପେକ୍ଷା ଏହି ଲେଖକଙ୍କ ମେଧା ଓ ଉତ୍ସାହର ପ୍ରଶଂସା କରିବା କଥା । ମାତ୍ର ଯେ ହେତୁ ତୁମେ ନିଜର ମନୋରଂଜନ ନିମନ୍ତେ ମୋତେ ମଧ୍ୟ ଉଦାତ୍ତ ବିଷୟରେ ଏକ ସଂକ୍ଷିପ୍ତ ଟିପ୍ପଣୀ ଏକତ୍ର ପ୍ରସ୍ତୁତ କରିବାକୁ ଅନୁରୋଧ କରିଥିଲ, ମୁଁ ବିଚାର କରି ଦେଖେ ଏ ବିଷୟ ସହିତ ସମ୍ବନ୍ଧ ମୋର ଧାରଣା-ବଳୀରେ କାର୍ଯ୍ୟଗ୍ରାହୀ ଲୋକଙ୍କ ନିମନ୍ତେ କିଛି ଉପକାର ଅଛି କି ନାହିଁ । ପ୍ରିୟ-ବନ୍ଧୁ, ତୁମ ଦକ୍ଷତା ଉପରେ ମୋର ଏତେ ବିଶ୍ୱାସ ଯେ, ମୋ ନିବନ୍ଧର ପ୍ରତ୍ୟେକ ତଥ୍ୟର ସମ୍ୟକ୍ ପରୀକ୍ଷା ନିମନ୍ତେ ମୁଁ ତୁମ ଭିତରେ ଜଣେ ସହାନୁଭୂତିଶୀଳ ଓ ଅନ୍ତର୍ଦୃଷ୍ଟି ସମ୍ପନ୍ନ ସମାଲୋଚକଙ୍କର ସନ୍ଧାନ କରୁଛି । କାରଣ

କେହି ଜଣେ ଯଥାର୍ଥ ମନ୍ତବ୍ୟ ଦେଇଥିଲେ ଯେ, ଯେଉଁ ବିଷୟରେ ଆମେ ଦୈବତ ଗୁଣରେ ସମତୁଲ୍ୟ ତାହା ହେଲା ଜନହିତୈଷଣା ଓ ସତ୍ୟପ୍ରିୟତା ।

ତୁମ ଭଳି ଜଣେ ସାହିତ୍ୟ-ବିଶାରଦ ବ୍ୟକ୍ତିଙ୍କୁ ପତ୍ର ଲେଖିବା ବେଳେ ଏ ବିଷୟରେ ଅଧିକ ବିସ୍ତାର ନକରି ମୁଁ କେବଳ ଏତିକି କହିବାକୁ ଚାହେଁ ଯେ, ଔଦାତ୍ତ୍ୟର ଅଭିବ୍ୟକ୍ତି ଭାଷାର ଉତ୍କ୍ରାନ୍ତତା ଓ ଚରମୋତ୍କର୍ଷରେ ନିହିତ । ଆଉ କେବଳ ଏହାରି ଦ୍ୱାରା ଶ୍ରେଷ୍ଠ କବି ଓ ଗଦ୍ୟ-ଲେଖକମାନେ ଗୌରବ ଅର୍ଜନ କରି ଯଶୋମନ୍ଦିରରେ ଅମର ଆସନ ଲାଭ କରିଛନ୍ତି । କୌଣସି ଉଚ୍ଚଭାବପୂର୍ଣ୍ଣ ଲେଖାଂଶ ପାଠକର ହେତୁବାଦରେ ବିଶ୍ୱାସ ନ ଜନ୍ମାଇ ତାର ଅନ୍ତରରେ ଭାବୋଦ୍ରେକ କରାଇଥାଏ । ଯାହା ପ୍ରଶଂସନୀୟ ତାହା ଆମର ବିଚାରକୁ ସତତ ଅଭିଭୂତ କରାଇଥାଏ ଓ ଯାହା କେବଳ ଯୁକ୍ତିମୂଳକ ଓ ସୁଖକର ତାହାକୁ ଅତିକ୍ରମ କରିଥାଏ । ବିଶ୍ୱାସ କରିବା ନ କରିବା ଆମର ନିୟନ୍ତ୍ରଣାଧୀନ; ମାତ୍ର ଉଦାତ୍ତର ପ୍ରଭାବ ଅତ୍ୟନ୍ତ ପ୍ରବଳ ଓ ଅପ୍ରତିରୋଧ୍ୟ ତଥା ପ୍ରତ୍ୟେକ ପାଠକ ଉପରେ ପ୍ରଭାବ ବିସ୍ତାର କରିଥାଏ । ଉଦ୍ଭାବନ-ନୈପୁଣ୍ୟ, ସୁବୋଧ ବ୍ୟବସ୍ଥା ଓ ବିଷୟ-ସନ୍ନିବେଶ ଗୋଟିଏ ବା ଦୁଇଟି ଲେଖାଂଶରେ ଉପଲବ୍ଧ ହୋଇନଥାଏ; ତାହା କ୍ରମଶଃ କୌଣସି ରଚନାର ସମଗ୍ର ଗଠନ ମଧ୍ୟରେ ପ୍ରକାଶ ପାଇଥାଏ । ମାତ୍ର ଉଦାତ୍ତ ଭାବନା ଯଦି ଉପଯୁକ୍ତ ଅବକାଶ ଲାଭ କରେ, ସମସ୍ତ ବିଷୟକୁ ବିଦ୍ୟୁତ୍ ସ୍ଫୁରଣର ସ୍ପଷ୍ଟତାପ୍ରାୟ ପ୍ରାଞ୍ଜଳ କରି ଦେଇଥାଏ ଓ ଗୋଟିଏ ମୁହୂର୍ତ୍ତରେ ବାଗ୍ମୀର ସମ୍ପୂର୍ଣ୍ଣ ସାମର୍ଥ୍ୟ ପ୍ରକାଶ କରି ଦେଇଥାଏ । ପ୍ରିୟତମ ଟେରେନ୍ସିଆନୁସ୍, ମୁଁ ଜାଣେ, ଏ ବିଷୟ ତଥା ତତ୍ତୁଲ୍ୟ ଅନ୍ୟ ସିଦ୍ଧାନ୍ତମାନ ବ୍ୟାଖ୍ୟା କରିବାରେ ତୁମର ସ୍ୱାନୁଭବ ହିଁ ତୁମକୁ ସମର୍ଥ କରି ପାରିବ ।

## ୨

ସମାଧାନ ନିମନ୍ତେ ସର୍ବପ୍ରଥମେ ଯେଉଁ ପ୍ରଶ୍ନଟି ଆସେ ତାହା

ହେଲା, ରଚନାରେ ଉଦାତ୍ତ ବା ମହାନତା ଶିକ୍ଷାଦେବା ନିମନ୍ତେ କୌଣସି କଳା ଅଛି କି ନାହିଁ । ସାଧାରଣତଃ କେତେକ ଲୋକଙ୍କର ମତ ହେଲା, ଏପରି ବିଷୟକୁ ଶିଳ୍ପ-ନିୟମର ଅନ୍ତର୍ଭୁକ୍ତ କରିବା ଚେଷ୍ଟା ଭ୍ରାନ୍ତିପୂର୍ଣ୍ଣ ମାତ୍ର । ସେମାନେ କହନ୍ତି, "ଉଦାତ୍ତ ବ୍ୟକ୍ତିର ନୈସର୍ଗିକ ପ୍ରବୃତ୍ତି ତଥା ଶିକ୍ଷା ଦ୍ୱାରା ଅର୍ଜିତ ହୋଇନଥାଏ; ପ୍ରତିଭା ହିଁ ଏହାର ଏକମାତ୍ର ଶିକ୍ଷକ ଯେ ଏହାକୁ ଶିକ୍ଷାଦେଇ ପାରେ । କଳାର ନୀରସ ଅନୁଶାସନାବଳୀ ଦ୍ୱାରା ରକ୍ତ ମାଂସ ଲୁଣ୍ଠିତ ହୋଇ ପ୍ରକୃତିର ସ୍ଫୂର୍ତ୍ତିମୟ ସୃଷ୍ଟି ସମୂହ ( ଏହାହିଁ ସେମାନଙ୍କର ମତ ) ମଳିନ ଓ ସବୁ ଦିଗରୁ ବିକୃତ ହୋଇ ପଡ଼ିଥାନ୍ତି ।" ମାତ୍ର ମୁଁ ଦୃଢ଼ ଭାବେ କହିବି ଏ ବିଷୟରେ ସତ୍ୟକୁ ଅନ୍ୟ ରୂପରେ ଉପସ୍ଥାପିତ କରାଯାଇ ପାରେ । ଆମେ ଏଇ ବିଷୟରେ ଧ୍ୟାନ ଦେବା ଯେ, ପ୍ରକୃତି ତାହାର ଉନ୍ନତଶୀଳ ଓ ସମଧିକ ଆବେଗାନ୍ୱିତ ମାନସିକ ଭାବ ଦୃଷ୍ଟିରୁ ସଂଯମବନ୍ଧହୀନା ଭଳି ଆଭାସୁ ଥିଲେ ହେଁ ସମ୍ପୂର୍ଣ୍ଣ ରୂପେ ଚପଳ ଓ ବିବେକହୀନା ଭଳି ନିଜକୁ ଦେଖାଇ ନଥାଏ । ଆଉ, ଯଦିଓ ପ୍ରକୃତି ସର୍ବଦା ପ୍ରାଣଭୂତ-ଆଧାର ତତ୍ତ୍ୱର ଆଦିଜନନୀ, ତଥାପି ଉପଯୁକ୍ତ ସୀମା ଓ ମୁହୂର୍ତ୍ତ ନିର୍ଦ୍ଧାରଣ କରିବାକୁ ତଥା ଉପଯୋଗ ଓ ଅନୁଭବର ଯଥାର୍ଥତା ଆନୟନ ନିମନ୍ତେ ବୈଜ୍ଞାନିକ ପଦ୍ଧତି ହିଁ ବିଶେଷ ପନ୍ଥା । ହେତୁବାଦର ନିୟନ୍ତ୍ରଣ ବିନା ମହତ୍ ଆବେଗ ଗୁଡ଼ିକୁ ସେ ସବୁର ସ୍ୱକୀୟ ଅନ୍ଧ ଓ ବିଚାରହୀନ ପ୍ରେରଣା ଉପରେ ଛାଡ଼ି ଦିଆଗଲେ ସେଇପରି ବିପଦରେ ପଡ଼ିଥାନ୍ତି ଯେଉଁପରି ଗୋଟିଏ ଶୂନ୍ୟଗର୍ଭ ପୋତକୁ ଯଦୃଚ୍ଛାକ୍ରମେ ଚାଳିତ ହେବାକୁ ଛାଡ଼ି ଦିଆଯାଏ । ଅନେକ ସମୟରେ ଏସବୁ ପାଇଁ ପ୍ରେରଣା ଆବଶ୍ୟକ; ମାତ୍ର ବେଳେବେଳେ ଲଗାମ ମଧ୍ୟ ଧରିବାକୁ ହେବ । ମାନବ-ଜୀବନ ସମ୍ବନ୍ଧରେ ସାମାନ୍ୟ ରୂପରେ ଡେମୋସ୍ଥେନେସ୍‌ଙ୍କ ମନ୍ତବ୍ୟ ହେଲା—ସୌଭାଗ୍ୟଶାଳୀ ହେବା ମହତ୍ତମ ଈଶ୍ୱରାନୁଗ୍ରହ; ମାତ୍ର ତତ୍ପରବର୍ତ୍ତୀ ଓ ମହତ୍ତ୍ୱ ଦୃଷ୍ଟିରୁ ସମାନ ହେଲା ସଦୁପଦେଶ ପ୍ରାପ୍ତ ହେବା—କାରଣ ସଦୁପଦେଶ ବିନା ସୌଭାଗ୍ୟ ସମ୍ପୂର୍ଣ୍ଣ ବିନଷ୍ଟ ହୋଇଯାଏ । ଯଦି ଆମେ ସୌଭାଗ୍ୟ ସ୍ଥାନରେ ପ୍ରତିଭା ଓ ସଦୁପଦେଶ ସ୍ଥାନରେ କଳାକୁ ଅବସ୍ଥାପିତ କରୁ, ତେବେ ଏହି ମତ ସାହିତ୍ୟ ପ୍ରତି ମଧ୍ୟ ପ୍ରଯୁଜ୍ୟ । ପୁନଶ୍ଚ ସର୍ବାଗ୍ରେ ସ୍ମରଣୀୟ ମହତ୍ତ୍ୱପୂର୍ଣ୍ଣ

କଥା ହେଲା, ଲେଖକ କେତେବେଳେ ସୃଜନରେ ସ୍ୱପ୍ରତିଭାର ନିଦର୍ଶମାନ ଦେଲେ ତାହା କେବଳ କଳାରୁ ଶିକ୍ଷା କରି ପାରିବେ । (୧)

ଏବଂବିଧ ଉପଯୋଗୀ ଅନୁଶୀଳନର ପ୍ରତିକୂଳ ସମାଲୋଚକଙ୍କ ନିକଟରେ ଏହି ଗୁଡ଼ିକୁ ମୁଁ ବିଗ୍ରହ ନିମନ୍ତେ ଉଦଘାଟନ କରୁଛି । ଆମର ଉକ୍ତ ଅନୁସନ୍ଧାନର ନିରର୍ଥକତା ଓ ନିଷ୍ଫଳତା ବିଷୟରେ ଏସବୁ ଦୃଷ୍ଟାନ୍ତ ତାଙ୍କୁ ନିଜର ମତ ପରିବର୍ତ୍ତନ ନିମନ୍ତେ ପ୍ରରୋଚିତ କରିପାରେ ।



ନିବାରଣ କରୁଥାନ୍ତୁ ସେମାନେ ଚିତ୍ତନଯନ୍ତ୍ରର ପାର୍ଶ୍ୱ ଅନଳଜିହ୍ୱା;
ଦେଖିବ ଯଦି ମୁଁ ଜଣେ ଚିନ୍ତନଶୀଳର ବ୍ୟକ୍ତି,
ତରଙ୍ଗାୟିତ ଅଗ୍ନି ଶିଖା ପ୍ରବାହରେ ଏକ ଦେଲି ଦେବ ମୁହିଁ,
ଆଉ ଭସ୍ମ କରି ସେହି ଆବରଣ ଆଣିବ ଭୂତଳେ
ମାତ୍ର ମୋ ମହତ ଗୀତି ଏ ଯାବତ୍ ହୋଇ ନାହିଁ ଗୀତ । (୨)

---

୧- ମୂଳ କଥା ହେଲା, ସାହିତ୍ୟର କେତେକ ତତ୍ତ୍ୱ ନୈସର୍ଗିକ ପ୍ରତିଭାର ଅନ୍ତର୍ଗତ ଓ ଏଥି ସମ୍ବନ୍ଧରେ ଜ୍ଞାନ ଲାଭ କରିବାକୁ ହେଲେ କଳାହିଁ ଏକମାତ୍ର ଅବଲମ୍ବନ ।

୨- **Aeschylus in his lost oritbyia**

ଏତାଦୃଶ ଶବ୍ଦପୁଞ୍ଜ, ମୋର କହିବାର କଥା, ଶବ୍ଦପୁଞ୍ଜ ଯଥା:- "ତରଙ୍ଗିତ ଅଗ୍ନିଶିଖା ପ୍ରବାହ" ଓ "ଗଗନଘୋଷୀ ବମନ" ଏବଂ ଉତ୍ତରଗଡ଼ବନକୁ ବଂଶୀ ବାଦନ ରୂପରେ ଗ୍ରହଣ କରିବା ତଥା ତତ୍‌ସଦୃଶ ଅନ୍ୟ ବାକ୍ୟଗୁଡ଼ିକ କରୁଣାତ୍ମକ ନ ହୋଇ ବିଦ୍ରୂପାତ୍ମକ ଅନୁକରଣରେ ଉପର୍ବସିତ ହୋଇଥାଏ ଏବଂବିଧ ଅଭିବ୍ୟକ୍ତି ଓ ଏହିସବୁ ରୂପକାତ୍ମକ ଶକ୍ତିର ପ୍ରମାଣ ନ ଦେଇ ବିଶୃଙ୍ଖଳ ଓ ଅସ୍ପଷ୍ଟ ପ୍ରଭାବ ଉତ୍ପନ୍ନ କରିଥାନ୍ତି । ସମାଲୋଚନାର୍ଥ ଆଲୋକରେ ପ୍ରତ୍ୟେକ ଠିକୁ ପୃଥକ୍ ପୃଥକ୍ ପରୀକ୍ଷା କଲେ ଯାହା ଉତ୍କୃଷ୍ଟ ବୋଧ ହେଉଥିଲା ତାହା କ୍ରମଶଃ ଅର୍ଥଶୂନ୍ୟ ଜଣାପଡ଼େ । ସେହିଭଳି, ବାକ୍ୟର ସ୍ୱଭାବ ଗାମ୍ଭୀର୍ଯ୍ୟ ବାଗ୍‌ବିନ୍ୟାସରେ ସ୍ଥିତି ସ୍ୱୀକାର କରୁଥିବା ବିୟୋଗାନ୍ତକରେ ମଧ୍ୟ, ଆମେ ତୁଚ୍ଛହୀନ ବାଗାଡ଼ମ୍ବରକୁ କ୍ଷମା ଦେବା ନାହିଁ—ସାଧାରଣ ଗଦ୍ୟରେ ତ ଏହା ନିହାତି ଅସଙ୍ଗତ ବୋଧ ହେବ । ଏଥି ପାଇଁ କିଂଗ୍‌ହ୍ୱେନର ଗୋର୍ଗିଅସଙ୍କ ସେଇ ମନୋହର ଶବ୍ଦାବଳୀ, ଯଥା, ଜେରକେସଙ୍କୁ "ପାରସ୍ୟବାସୀଙ୍କର ଜେଉସ୍ ଓ ଗୃଧ୍ରମାନଙ୍କୁ ଜୀବନ୍ତ କବର"—ଏହି ଶବ୍ଦଗୁଡ଼ିକୁ ଆମେ ଉପହାସ କରିଥାଉଁ । କ୍ଲିସ୍ଥେନେସ୍‌ଙ୍କର କେତେକ ଦୁରଧିଗମ୍ୟ ତୁଳନା ପ୍ରତି ମଧ୍ୟ ଏହି କଥା ଖାଟେ—ସେଗୁଡ଼ିକ ଉଦାତ୍ତ ନୁହନ୍ତି ବରଂ ଅତିଶୟୋକ୍ତିପୂର୍ଣ୍ଣ । କ୍ଲେଇ-ତାରଖସ୍ ତ ଆହୁରି ହାସ୍ୟୋଦ୍ଦୀପକ—ସେ ଏଭଳି ଲେଖକ ଯାହାଙ୍କ ଫେନିଳ ଶୈଳୀ ସଫୋକ୍ଲସଙ୍କ ଭାଷାକୁ ବ୍ୟଙ୍ଗାନୁକରଣ କରି ଆମକୁ କହିବାକୁ ପ୍ରବର୍ତ୍ତାଏ —ସେ ଏକ କ୍ଷୁଦ୍ର ମୁଖବାଦ୍ୟ ବଜାନ୍ତି; ତା ବି ବେସୁରା-ରାଗିଣୀରେ ।" ଏଭଳି ଦୋଷ ଆମ୍ଫିକ୍ରେଟସ୍, ହେଗେସିଅସ୍ ଓ ମଟ୍ରିସ୍‌ଙ୍କଠାରେ ମଧ୍ୟ ପରିଲକ୍ଷିତ ହୁଏ —ଏହି ଲେଖକମାନେ ଭାବନ୍ତି ଯେ ସେମାନେ ନିତ୍ୟ ଅନ୍ତର ପ୍ରେରଣା ମୁହୂର୍ତ୍ତରେ ଲେଖୁଛନ୍ତି; ବାସ୍ତବରେ ପ୍ରତିଭାର ପ୍ରମାଣ ନ ଦେଇ ସେମାନେ କେବଳ ନିର୍ବୋଧ- କ୍ରୀଡ଼ାରେ ପ୍ରବୃତ୍ତ ହୁଅନ୍ତି ।

ସ୍ଥୂଳତଃ କହିବାକୁ ଗଲେ ରଚନାରେ ଶବ୍ଦାଡ଼ମ୍ବର ପରିହାର କରିବା ଅତି ଦୁଃସାଧ୍ୟ ବ୍ୟାପାର । ଏହାର କାରଣ ହେଲା, ସେହି ଉତ୍ତୁଙ୍ଗ-

ଶୈଳୀର ଉଚ୍ଚାଭିଳାଷୀ ଲେଖକମାନେ ଶକ୍ତିହୀନତା ଓ ଭାଷା ଦାରିଦ୍ର୍ୟ ଦୋଷରେ ପର୍ଯ୍ୟସ୍ତ ହେବା ଭୟରେ କୌଣସି ପ୍ରାକୃତିକ ନିୟମ ଦ୍ୱାରା ବିପରୀତ ଚରମରେ ଉପନୀତ ହୁଅନ୍ତି । ସେମାନଙ୍କର ସିଦ୍ଧାନ୍ତ ହେଲା—"ଯେ ମହତ୍ ଉଦ୍ୟମରେ ଅସଫଳ ହୁଏ, ତାର ଅସଫଳ ହେବା କ୍ଷମ୍ୟ ।" ଆକାର ଯଦି ଶୂନ୍ୟଗର୍ଭ ଓ କୃତ୍ରିମ ତାହା ସର୍ବଦା ଅବାଞ୍ଛନୀୟ—ତାହା ଭୌତିକ ଶରୀର ବା ଭାଷା ଯେଉଁଥିରେ ହେଉ । ଆମ ଭିତରେ କ୍ଷୁଦ୍ରତାର ପ୍ରଭାବ ଉତ୍ପାଦନ କରିବାର ଆଶଙ୍କା ତହିଁରେ ଅଛି । କେହି ଜଣେ କହିଥିଲେ, "ଉଦରୀ ରୋଗ ପୀଡ଼ିତ ମାନବ ଠାରୁ ଶୁଷ୍କତର ଆଉ କିଛି ନାହିଁ ।"

ତତ୍ପରେ, ବାଗାଡମ୍ବରର ବିଶିଷ୍ଟ ଲକ୍ଷଣ ହେଲା, ଏହା ଉଦାତ୍ତର ସୀମାକୁ ଅତିକ୍ରମ କରିଯାଏ । ମାତ୍ର ଆଉ ଗୋଟିଏ ଦୋଷ ଅଛି ଯାହା ମହତ୍ତ୍ୱର ସଂପୂର୍ଣ୍ଣ ବିପରୀତ—ତାହାକୁ ବାଳେୟତା କୁହାଯାଏ । ଏହା ଶକ୍ତିହୀନ ଓ ସଂକୀର୍ଣ୍ଣ ମନର ହିଁ ଦୁର୍ବଳତା । ବାସ୍ତବିକ, ଲେଖାରେ ଯେତେ ପ୍ରକାର ଗୁରୁତର ଦୋଷ ଦେଖାଯାଏ ଏହା ସବୁଠାରୁ ଘୃଣ୍ୟ । ବାଳେୟତା କହିଲେ ଆମେ ବୁଝୁଁ ମନର ଏକ ପାଣ୍ଡିତ୍ୟାଭିମାନୀ ସ୍ୱଭାବ, ଯାହା ଆଡ଼ମ୍ବର ସହକାରେ ଆରମ୍ଭ ହୋଇ ତୁଚ୍ଛ ହୀନତାରେ ପରିସମାପ୍ତ ହୁଏ । ଏହି ଧରଣର ତ୍ରୁଟି ବିଚ୍ୟୁତି ସେହିମାନଙ୍କ ଲେଖାରେ ଦେଖାଯାଏ, ଯେଉଁମାନେ ଅସାଧାରଣ ବୁଦ୍ଧିମତ୍ତା, ଅତ୍ୟୁଜ୍ଜ୍ୱଳତା, ବିଶେଷତଃ ଆକର୍ଷଣୀୟତା ପ୍ରତି ଦୃଷ୍ଟି ରଖି ଶେଷରେ ନଗଣ୍ୟ ଓ ନିର୍ବୋଧ କୃତ୍ରିମତାରେ ପଡ଼ିଯାନ୍ତି । ଏଥି ସହିତ ଘନିଷ୍ଠ ଭାବେ ସମ୍ବନ୍ଧ ଆବେଗ-ବିଷୟକ ତୃତୀୟ ଦୋଷ, ଯାହାକୁ ଥିଓଡୋରୁସ "ମିଥ୍ୟା ଆବେଗ" ନାମରେ ନାମିତ କରିଥିଲେ । ଏହାର ଅର୍ଥ, ଯେଉଁଠି କୌଣସି ଆବେଗର ପ୍ରୟୋଜନୀୟତା ନାହିଁ, କିମ୍ବା ଘଟଣାର ସମର୍ଥନ ଠାରୁ ଅଧିକ ଆବେଗର ତଥା ଅକାଳୋଚିତ ଓ ଫାଙ୍କା ଆବେଗ ପ୍ରଦର୍ଶନ କରାଯାଏ । ଏଣୁ ଆମେ ପ୍ରାୟତଃ ଦେଖୁଁ ଜଣେ ଜଣେ ଲେଖକ ମାନସିକ ବିଶୃଙ୍ଖଳାରେ ତାଡ଼ିତ ହୋଇ ବିଷୟ ସହିତ କୌଣସି ସଂପର୍କ ନଥିବା ଶୁଦ୍ଧ ବ୍ୟକ୍ତିଗତ ଅନୁଭୂତିର ବିରକ୍ତିକର ପ୍ରଦର୍ଶନରେ ପ୍ରମତ୍ତ ହୋଇ ଉଠନ୍ତି । ଫଳରେ ଲେଖକ

ସତେ କେତେ ହାସ୍ୟାସ୍ପଦ ପ୍ରଣୀତ ହୋଇ ନଥିବେ, ଯାହାଙ୍କର ଅତି ପ୍ରବଳ ଉତ୍‌ପ୍ରେରଣା ପାଠକଙ୍କୁ ସଂପୂର୍ଣ୍ଣ ଅବଚଳିତ ରଖିଥାଏ ! ଯାହାହେଉ, ଏ ବିଷୟ ମୁଁ ଏଇଠି ଛାଡ଼ି ଦେଉଛି, କାରଣ ରଚନାରେ କାରୁକାର୍ଯ୍ୟବ୍ୟଂଜକ ବିବେଚନା ନିମନ୍ତେ ମୁଁ ଏକ ସ୍ୱତନ୍ତ୍ର ଗ୍ରନ୍ଥ ରଚନା କରିବାକୁ ମନସ୍ଥ କରିଛି !

## [୪]

ମୁଁ ଯେଉଁ ଶେଷୋକ୍ତ ଦୋଷ ଉଲ୍ଲେଖ କରିଛି ତାହା ଟିମଏଉସ୍‌ଙ୍କ ଠାରେ ବହୁଳ ପରିମାଣରେ ପରିଲକ୍ଷିତ ହୁଏ....ତାହା ହେଲା, ସ୍ଫୂର୍ତ୍ତିହୀନତା ଦୋଷ  ଅନ୍ୟ ସବୁ ଦୃଷ୍ଟିରୁ ସେ ଜଣେ ଯୋଗ୍ୟ ଲେଖକ ଓ ଉଦାତ୍ତ ଶୈଳୀରେ ମଧ୍ୟ କେବେ କେବେ ସେ ଅସଫଳ ନୁହନ୍ତି । ସେ ଖୁବ୍ ବିଦ୍ୱାନ୍ ଓ ପ୍ରତିଭାଶାଳୀ  ଅନ୍ୟମାନଙ୍କ ଦୋଷର ସେ ଜଣେ ନିଷ୍ଠୁର ସମାଲୋଚକ.... ମାତ୍ର ଦୁର୍ଭାଗ୍ୟକ୍ରମେ ସେ ନିଜ ଦୋଷ ପ୍ରତି ଆଖି ବୁଜି ଦେଉଥିଲେ । ନୂତନ ଭାବନାର ପରିପ୍ରକାଶ କରିବାର ଔତ୍ସୁକ୍ୟ ହେତୁ ସେ ସର୍ବଦା ନିତାନ୍ତ ବାଳ-ସୁଲଭ ଅସଙ୍ଗତି କରି ପକାନ୍ତି । ମୁଁ କେବଳ ଗୋଟିଏ ଦୁଇଟି ଉଦ୍ଧୃତାଂଶର ଉଦାହରଣ ଦେବି, କାରଣ କେକିଲିଉସ୍ ସେଥି ମଧ୍ୟରୁ ଅଧିକାଂଶ ସୂଚିତ କରି ସାରିଛନ୍ତି । ମହାନ୍ ଆଲେକ୍‌ଜାଣ୍ଡରଙ୍କ ବିଷୟରେ ଖୁବ୍ ଭଲ କରି କହିବାକୁ ଇଚ୍ଛା କରି ସେ କହିଛନ୍ତି, ଅଲେକ୍‌ଜାଣ୍ଡାର ଏପରି ଜଣେ ବ୍ୟକ୍ତି "ଯେ ସମଗ୍ର ଏସିଆକୁ କେତୋଟି ବର୍ଷ ଭିତରେ ଅଧିକାର କରିଥିଲେ ଯାହାକି ଇସୋକ୍ରେଟେସ୍‌ଙ୍କୁ ପାରସ୍ୟ-ବିରୁଦ୍ଧରେ ଗ୍ରୀକ୍‌ମାନଙ୍କୁ ଯୁଦ୍ଧ ନିମନ୍ତେ ପ୍ରେରଣା ଦେଉଥିବା ପ୍ରଶସ୍ତିମୂଳକ ଉଦ୍‌ବୋଧନ ରଚନା ଠାରୁ ସାମାନ୍ୟ ।" "ମହାନ୍ ଏମାଥୀୟ ବିଜେତାଙ୍କ ସହିତ ଜଣେ ଆଥେନୀୟ ଅଳଂକାର ଶାସ୍ତ୍ରୀଙ୍କର ତୁଳନା କେତେ ଅଦ୍ଭୁତ ସତେ ! ଏବଂବିଧ ବିଗ୍ରହରୁ ଏ କଥା ସ୍ପଷ୍ଟ ହୁଏ ଯେ, ସ୍ପାର୍ଟା ଅଧିବାସୀମାନେ ବୀରତ୍ୱରେ ଇସୋକ୍ରେଟେସ୍‌ଙ୍କ ଠାରୁ ହୀନତର, କାରଣ

ମେସେନେକୁ ଜୟ କରିବାରେ ସେମାନଙ୍କୁ ତିରିଶ ବର୍ଷ ଲାଗିଥିଲା ବେଳେ ଇସୋକ୍ରେଟେସ୍ ଉକ୍ତ ଉଦ୍ଦୀପନାପୂର୍ଣ୍ଣ ଭାଷଣ ଦଶ ବର୍ଷରେ ରଚନା କରିଥିଲେ । ଆହୁରି ମଧ୍ୟ, ସିସିଲିରେ ବନ୍ଦୀ ହୋଇଥିବା ଏଥେନୀୟମାନଙ୍କ ବିଷୟରେ ତାଙ୍କର ଭାଷା ପ୍ରତି ଲକ୍ଷ୍ୟକର, :– ହର୍ମେସ୍‌ଙ୍କ ମୂର୍ତ୍ତିକୁ ବିକଳାଙ୍ଗ କରି ଧର୍ମ ନିଷ୍ଠା ବିହୀନ ଦୌରାତ୍ମ୍ୟ ପାଇଁ ସେମାନଙ୍କୁ ଦଣ୍ଡ ଭୋଗିବାକୁ ପଡ଼ିଥିଲା । ଆଉ ଏଇ ଧ୍ୱଂସକାର୍ଯ୍ୟରେ ମୁଖ୍ୟ କର୍ତ୍ତା ଥିଲେ ହର୍ମୋନ୍‌ଙ୍କ ପୁତ୍ର ହର୍ମୋକ୍ରେଟସ୍ ; ତାଙ୍କର ପିତା କ୍ଷତିଗ୍ରସ୍ତ ଦେବତାଙ୍କ ବଂଶରେ ଜନ୍ମ ହୋଇଥିଲେ ।" ପ୍ରିୟତମ ତେରେନ୍ତିଆନୁସ୍, ମୁଁ ତ ଆଶ୍ଚର୍ଯ୍ୟ ହେଉଛି ସେ କପରି ଦୁରାତ୍ମା ଡିଓନ୍ୟୁସିଅସ୍‌ଙ୍କ ବିଷୟରେ କହିବାକୁ ଭୁଲିଗଲେ ଯେ, ଜେଉସ୍ ଓ ହେରାକ୍ଲେସ୍‌ଙ୍କ ପ୍ରତି ଭକ୍ତିହୀନତା ହେତୁ ଡିଓନ ଓ ହେରକ୍ଲେଇଦେସ୍ ତାଙ୍କର ଶକ୍ତି ଅପହରଣ କରି ନେଇଥିଲେ । ତେବେ ତିମାଏଉସ୍‌ଙ୍କୁ କାହିଁକି ଦୋଷ ଦିଆଯିବ, ଯେତେବେଳେ ଜେନୋଫୋନ ଓ ପ୍ଲେଟୋଙ୍କ ଭଳି ସାହିତ୍ୟର ମହାରଥୀମାନେ, ସକ୍ରେଟିସ୍‌ଙ୍କ ଦ୍ୱାରା ଉପଦିଷ୍ଟ ହୋଇ ମଧ୍ୟ ଏଇଭଳି ତୁଚ୍ଛ ଦୁରଧିଗମ୍ୟ ତୁଳନାରେ ଆତ୍ମବିସ୍ମୃତ ହୋଇପଡ଼ିଛନ୍ତି । ପୂର୍ବୋକ୍ତ ବ୍ୟକ୍ତି (ଜେନୋଫୋନ) ତାଙ୍କର ବିବରଣୀ ବା ସ୍ପାର୍ଟାବାସୀଙ୍କର ଶାସନ ବ୍ୟବସ୍ଥା ଶୀର୍ଷକ ଗ୍ରନ୍ଥରେ ଏଇ କଥା ଲେଖିଛନ୍ତି    ମର୍ମର ମୂର୍ତ୍ତିରେ ସ୍ୱର ଶୁଣିବାଠାରୁ ସେମାନଙ୍କ ସ୍ୱର ଶୁଣିବା ତୁମ ପକ୍ଷରେ ଦୁଷ୍କର, ସେମାନଙ୍କ ଏକାଗ୍ର ଦୃଷ୍ଟି ସତେ ଯେପରି ବ୍ରୋଞ୍ଜରେ ଢଳା ହୋଇଥିବା ମୂର୍ତ୍ତିର ଦୃଷ୍ଟି ଭଳି ଅଟଳ ; ସେମାନଙ୍କ ଆଖିର ପିତୁଳା ଠାରୁ ସେମାନଙ୍କୁ ତୁମେ ଅଧିକ ଲଜ୍ଜାଶୀଳ ମନେ କରିବ । ଚକ୍ଷୁତାରକାକୁ 'ଲଜ୍ଜାବତୀ କୁମାରୀ" ରୂପେ ବର୍ଣ୍ଣନା କରିବା ଏକ ଅଯୌକ୍ତିକ ବିଷୟ ଯାହା ଜେନୋଫୋନଙ୍କ ଅପେକ୍ଷା ବରଂ ଆମ୍ଫିକ୍ରେଟେସ୍‌ଙ୍କ ଠାରେ ଶୋଭା ପାଇଥାନ୍ତା । ଆଉ ଚକ୍ଷୁରେ ଲଜ୍ଜାତୁରତା ପୁରାପୂରି ପ୍ରକାଶ ପାଉଛି ବୋଲି ବିଚାରିବା କେତେ ଅଦ୍ଭୁତ ଭ୍ରାନ୍ତ ଧାରଣା ! ଯଦିଓ ଏକଥା ସାଧାରଣତଃ କୁହାଯାଇଥାଏ ଯେ, ନିର୍ଲଜ୍ଜ ବ୍ୟକ୍ତି ଚକ୍ଷୁର ଅଭିବ୍ୟକ୍ତି ଦ୍ୱାରା ତା'ର ଚରିତ୍ର ଯେତେ ପ୍ରକାଶ କରିପାରେ ସେପରି ଅନ୍ୟ କୌଣସି ଦ୍ୱାରା ହୋଇ ନଥାଏ ।

ଏକ୍‌କିଲ୍ଲେସ୍ ଇଲିୟାଡ୍ ମହାକାବ୍ୟରେ ଏଇପରି ଆଗାମେମନନଙ୍କୁ ସମ୍ବୋଧନ କରିଛନ୍ତି—"ଶ୍ୱାନଚକ୍ଷୁ, ହେ ମଦାନ୍ଧ !" କିନ୍ତୁ ଥିମସ୍ଟିଉସ୍ ବିସ୍ତୃତ ହୀନତା ଯୋଗେ ଭାବଚୌରସୁଲଭ ଶୀତଳତାର ଏଇ ଅଂଶକୁ ମଧ୍ୟ ଜେନୋଫୋନଙ୍କ ଅଧିକାର ନିମନ୍ତେ ଗ୍ରୁଡ଼ ପାରି ନାହାନ୍ତି । ଅନ୍ୟ ଜଣେ ବ୍ୟକ୍ତିଙ୍କୁ ବିବାହିତା ନିଜର ଏକ ସଂପର୍କୀୟା ଭଗିନୀଙ୍କୁ ଅଗଥୋକ୍ଲେସ କିପରି ବିବାହ-ଉତ୍ସବରୁ ଘେନି ପଳାଇ ଯାଇଥିଲି ସେ କଥା ବର୍ଣ୍ଣନା କରି ସେ ପଚାରୁଛନ୍ତି :—"ଯାହା ଆଖିରେ କୁମାରୀମାନଙ୍କ ପରିବର୍ତ୍ତେ ବାରାଙ୍ଗନା ନାହାନ୍ତି ତାକୁ ଗ୍ରୁଡ଼ ଏମିତି କାର୍ମ କିଏ କରି ପାରିବ ?" ଆଉ ସ୍ୱୟଂ ପ୍ଲେଟୋ ଅନ୍ୟନ ଶୈଳୀର ଉଦ୍‌ଗମ ଗୁରୁ ହେଲେହେଁ କୌଣସି ଗୋଟିଏ ଲିପିବଦ୍ଧ ସ୍ମୃତିଫଳକକୁ ବର୍ଣ୍ଣନା କରିବା ଉଦ୍ଦେଶ୍ୟରେ କହିଛନ୍ତି :—"ସେମାନେ ନମେରୁ ବୃକ୍ଷର ସ୍ମାରକ ଲେଖି ମନ୍ଦିରରେ ସଂରକ୍ଷିତ କରିବେ ।" ଆଉ ସେହିଭଳି, ମାଗିଲ୍ସ, ତାଙ୍କରେ ପ୍ରାଚୀର ବିଷୟରେ ମୁଁ ସ୍ପାର୍ଟା ସହ ଏକମତ ଯେ, ସେମାନଙ୍କୁ ଭୂମିରେ ଶାୟିନ କରିବାକୁ ଦିଆଯାଉ ଓ ଉତ୍‌ଥିତ ହେବାକୁ ଦିଆ ନଯାଉ ।" ସେହିପରି ହେରୋଦୋତସ୍ ମଧ୍ୟ ସମାନ ଦୋଷଭାଗୀ—ସେ ଯେତେବେଳେ ସୁନ୍ଦରୀ ନାରୀମାନଙ୍କୁ 'ଆଖିର କଣ୍ଟା' ବୋଲି କହନ୍ତି । ଅବଶ୍ୟ ଏ କ୍ଷେତ୍ରରେ କିଛିଟା କ୍ଷମା କରାଯାଇ ପାରେ, କାରଣ ଏ କଥା କହୁଥିବା ଲୋକେ ମଦ୍ୟପ ଓ ବର୍ବର । ତଥାପି ନାଟକୀୟ ଦୃଷ୍ଟିରୁ ମଧ୍ୟ ଏପରି ରୁଚିଗର୍ହିତ କଳଙ୍କ ଦ୍ୱାରା ଏକ ଅମର ରଚନାର ପୃଷ୍ଠାକୁ ଅସୁନ୍ଦର କରିବାକୁ ଦେବା ଉଚିତ ନୁହେଁ ।

## [୪]

ଏବେ ଏଇ ସବୁ ସୁସ୍ପଷ୍ଟ ଭାଷାଗତ ଅନୌଚିତ୍ୟର ଏକମାତ୍ର ସାଧାରଣ ଉତ୍ସ ଅନ୍ୱେଷଣ କରାଯାଇ ପାରେ—ତାହା ହେଲ, ଭାବନାରେ ନୂତନତାର ଅନ୍ୱେଷଣ । ଆଜିର ପୃଥିବୀର ଅଧିକାଂଶ ଶିକ୍ଷିତ ଲୋକଙ୍କ ମନକୁ

ଏହା ପ୍ରତିପାଦିତ କରୁଛି । ମାନବୀୟ ଦୋଷଗୁଣ ସାଧାରଣତଃ ଗୋଟିଏ ସ୍ରୋତରୁ ଉତ୍ପନ୍ନ ହୋଇଥାଏ । ଏହି ସୂତ୍ରକୁ ସାହିତ୍ୟ ପ୍ରତି ପ୍ରୟୋଗ କରି— ଶୈଳୀର ଯେଉଁ ଅଲଙ୍କାର, ଯେଉଁ ଉଦାତ୍ତ ଓ ମନୋରମ ଚିତ୍ରକଳ୍ପ କେବଳ ଉତ୍କର୍ଷ ନୁହେଁ, ସଫଳତା ଆନୟନର ମୂଳତତ୍ତ୍ୱ ଓ ଆଧାର ସ୍ୱରୂପ,, ତାହା ମଧ୍ୟ ବିଫଳତା ନିମନ୍ତେ ଦାୟୀ । ଏ ସବୁ ଶବ୍ଦରୂପର ପରିବର୍ତ୍ତନ, ଅତି-ଶୟୋକ୍ତି ଓ ଏକବଚନ ସ୍ଥାନରେ ବହୁବଚନର ବ୍ୟବହାର ସ୍ଥଳରେ ଦେଖା-ଯାଏ । ସେଥିରେ ଯେଉଁ ଦୋଷ ନିହିତ ମୁଁ ବର୍ତ୍ତମାନ ତାହା ଦର୍ଶାଇବି । ତେଣୁ ଆମର ପରବର୍ତ୍ତୀ କର୍ତ୍ତବ୍ୟ ଉଦାତ୍ତସଂପର୍କିତ ଶୈଳୀର ଦୋଷଗୁଡ଼ିକୁ ଆମେ କିପରି ପରିହାର କରି ପାରିବା ସେହି ପ୍ରଶ୍ନର ଉତ୍ଥାପନ କରି ତାହାର ସମାଧାନ କରିବା ।

# [୬]

ଏଥିପାଇଁ ଆମର ସର୍ବୋତ୍କୃଷ୍ଟ ଉପାୟ ହେବ, ସର୍ବପ୍ରଥମେ ପ୍ରକୃତ ଉଦାତ୍ତର କେତେକ ନିର୍ଦ୍ଦିଷ୍ଟ ତତ୍ତ୍ୱ ଓ ଆଦର୍ଶକୁ ହୃଦୟଙ୍ଗମ କରିବା । ଯଦିଓ ଏହା ଏକ କଠିନ ବ୍ୟାପାର, କାରଣ ଶୈଳୀର ଯଥାଯଥ ବିଚାର ସୁଦୀର୍ଘ ଅନୁଭୂତିର ଚରମ ଫଳଶ୍ରୁତି, ତଥାପି ମୋର ବିଶ୍ୱାସ, ମୁଁ ଯେଉଁ ଉପାୟ ସୂଚିତ କରିବି ନିୟମ ଦୃଷ୍ଟିରୁ ତାହା ଆମକୁ ବାସ୍ତବ ଓ ଅବାସ୍ତବ ଉଦାତ୍ତ ମଧ୍ୟରେ ପାର୍ଥକ୍ୟ ନିର୍ଦ୍ଧାରଣ କରିବାରେ ସମର୍ଥ କରିବ ।

# (୨)

ଏହା ଲକ୍ଷ୍ୟ କରିବା ଉଚିତ ଯେ, ସକଳ ଭୁଙ୍ଗ ମନର ଅଧିକାରୀଙ୍କ ଦ୍ୱାରା ବର୍ଣ୍ଣିତ ମାନବ ଜୀବନରେ ପ୍ରକୃତରେ କିଛି ମହତ୍ ନୁହେଁ । ଉଦା-

ହରଣ ସ୍ୱରୂପ, ସଂପଦ, ସମ୍ମାନ, ଯଶ ଓ ପ୍ରତିପତ୍ତି ଅଥବା ସେଇଭଳି ଅନ୍ୟ ବସ୍ତୁ ଗୁଡ଼ିକୁ, ଯେଉଁ ଗୁଡ଼ିକରେ ବାହ୍ୟ ଜାକଯମକ ଓ ଘଟଣା ପ୍ରଦର୍ଶନ ବହୁଳ ମାତ୍ରାରେ ବିଦ୍ୟମାନ, ସେ ସବୁକୁ କୌଣସି ବିବେକବାନ୍ ବ୍ୟକ୍ତି ପରମ ଆଶୀର୍ବାଦ ରୂପେ ଗ୍ରହଣ କରିବେ ନାହିଁ । କାରଣ ସେ ଦେଖେ, ଏ ସବୁ ବସ୍ତୁର ଉପେକ୍ଷା ମଧ୍ୟ କିଛି କମ୍ ଆଶୀର୍ବାଦ ନୁହେଁ । ଏଇ ସକଳ ବସ୍ତୁ ଅର୍ଜନ କରିବାର ସାମର୍ଥ୍ୟ ସତ୍ତ୍ୱେ ଯେଉଁ ଲୋକେ ହୃଦୟର ବିଶାଳତା ହେତୁ ସେଗୁଡ଼ିକୁ ଅବହେଳା କରିଥାନ୍ତି ସେମାନଙ୍କଠାରୁ ଯେଉଁମାନେ ଏ ଗୁଡ଼ିକୁ ପାଇ ପାରିଥାନ୍ତି, ନିଶ୍ଚୟ ଅପେକ୍ଷାକୃତ ସ୍ୱଳ୍ପ ସମ୍ମାନଭାଜନ ଅଟନ୍ତି । ଏବେ ଏହି ସିଦ୍ଧାନ୍ତକୁ ଆମେ କବିତା କିମ୍ବା ଗଦ୍ୟ ରଚନାରେ ନିହିତ ଉଦାତ୍ତ ତତ୍ତ୍ୱ ପ୍ରତି ପ୍ରୟୋଗ କରି ଦେଖିବା । ଆମେ ସବୁ କ୍ଷେତ୍ରରେ ପ୍ରଶ୍ନ କରିବା.... ଏହା କ'ଣ ନାମକୁ ମାତ୍ର ଉଦାତ୍ତ, ଏହାର ଆଡ଼ମ୍ବରପୂର୍ଣ୍ଣ ବାହ୍ୟାବରଣ କ'ଣ କେବଳ ଅସତ୍ୟ ଓ କଦାକାର ଆଡମ୍ବରପୂର୍ଣ୍ଣ ପ୍ରଦର୍ଶନୀ ମାତ୍ର, ଯାହାକୁ ବିଶ୍ଳେଷଣ କଲେ ଶୂନ୍ୟତାହିଁ ଗୋପନ ରହିଥିବା ଦେଖିବାକୁ ମିଳିବ ? ଆଉ ତା' ହୋଇଥିଲେ ମହଦାଶୟ ବ୍ୟକ୍ତି ତାହାକୁ ପ୍ରଶଂସା ନ କରି ନିନ୍ଦାହିଁ କରିବେ । ଏହା ଆମର ଭାବିବା ସ୍ୱାଭାବିକ ଯେ, ପ୍ରକୃତ ଉଦାତ୍ତ ଦ୍ୱାରା ଆମ ଆତ୍ମା ଊର୍ଦ୍ଧ୍ୱାଭିମୁଖୀ ହୋଇ ତଥା ଏକ ପ୍ରକାର ଉଦାର ବିଜୟୋଲ୍ଲାସ ମନରେ ଧାରଣା କରି ଆନନ୍ଦ ଓ ଗର୍ବରେ ପରିପୂର୍ଣ୍ଣ ହୋଇଉଠେ, ଯେପରି ଆମେ ଯାହା ପଢ଼ିଛନ୍ତି କିମ୍ବା ଶୁଣିଛନ୍ତି ସେ ସବୁ ଭାବନା ଆମଠାରୁ ଉଦ୍‌ଭୂତ । କୌଣସି ରଚନାକୁ ଏଥିପାଇଁ ଯେତେବେଳେ ଜଣେ ସୂକ୍ଷ୍ମ ବିଦଗ୍ଧ ସମୀକ୍ଷକ ବାରମ୍ବାର ପାଠ କଲେ ମଧ୍ୟ ତାଙ୍କର ମନ ଉଚ୍ଚଭାବ ପ୍ରତି ଉନ୍ମୁଖ ହେବାକୁ ଅସମର୍ଥ ହୁଏ ଓ ଯାହା ବାସ୍ତବରେ ଅଭିବ୍ୟକ୍ତ ଲାଭ କରିଛି ତାହାଠାରୁ ଯଦି ଅଧିକ ଭାବ ବ୍ୟଂଜନା ପରିବ୍ୟାପ୍ତ ନ ହୁଏ, ଆଉ ଯେତେ ଅଧିକ ଏହାକୁ ପାଠ କରାଯାଏ, ସେତେ ଆଗ୍ରହ ହ୍ରାସ ପାଏ, ତେବେ ସେ ରଚନାରେ ପ୍ରକୃତ ଉଦାତ୍ତତା ସଂସ୍ଥିତ ନାହିଁ । କାରଣ ହେଲା, ପଠନ ବା ଶ୍ରବଣ ମାତ୍ରେ ଏହାର ପ୍ରଭାବ ବିଦୂରିତ ହୁଏ । ମାତ୍ର ଯେତେବେଳେ

କୌଣସି ରଚନା ବ୍ୟଂଜନାଗର୍ଭିତ, ଯେତେବେଳେ ଏଥିରୁ ଧ୍ୟାନ ଅପସାରଣ କରିବା କଠିନ ଓ ଅସମ୍ଭବ ହୋଇପଡ଼େ ଓ ଯାହା ପ୍ରବଳ ଓ ସ୍ଥାୟୀ ରୂପେ ସ୍ମୃତିରେ ଉଜ୍ଜୀବିତ ରହେ, ସେତେବେଳେ ଆମେ ଉଦାତ୍ତର ବାସ୍ତବ ଆଲୋକରେ ଆଲୋକିତ ବୋଲି ନିଶ୍ଚିତ ହେବାକୁ ପଡ଼ିବ । ସାଧାରଣତଃ ଆମେ ସେହି ଭାଷାକୁ ପ୍ରକୃତ ମହତ୍ ଓ ଉଦାତ୍ତ ସ୍ୱୀକାର କରିବା ଯାହା ସବୁ ଲୋକଙ୍କୁ ସର୍ବଦା ଆନନ୍ଦ ପ୍ରଦାନ କରିପାରେ । କାରଣ ଯେତେବେଳେ ସେହି ଏକ ଗ୍ରନ୍ଥ ପଢ଼ୁଥିବା ସବୁ ଲୋକଙ୍କ ଉପରେ ସମ ପ୍ରଭାବ ଉତ୍ପନ୍ନ କରେ । ସେମାନଙ୍କର ପ୍ରାପ୍ତି ଚେଷ୍ଟା, ଜୀବନଯାତ୍ରାର ଚଳଣୀ, ଉଚ୍ଚାକାଂକ୍ଷା, ଅବସ୍ଥା ଓ ଭାଷାରେ ଯେତେ ବୈଭିନ୍ନ୍ୟ ଥିଲେ ସୁଦ୍ଧା, ଏପରି ବିପରୀତର ସମନ୍ୱୟ ସେମାନଙ୍କର ଅନୁକୂଳ ସିଦ୍ଧାନ୍ତକୁ ଦୁର୍ବାର ପ୍ରଭୁତ୍ୱ ଦାନ କରେ ।

## (୮)

ମୁଁ ବର୍ତ୍ତମାନ ପ୍ରମୁଖ ପାଞ୍ଚଗୋଟି ମୂଳସ୍ରୋତ, ନିର୍ଦ୍ଧାରଣ କରିବାକୁ ଯିବି ଯେଉଁଥିରୁ ପ୍ରାୟ ସକଳ ଉଦାତ୍ତତାର ଉତ୍ପତ୍ତି । ଅବଶ୍ୟ ଏହା ସ୍ୱୀକାର କରିବାକୁ ହେବ ଯେ, ଏହି ପାଞ୍ଚଗୋଟି ମୂଳ କାରଣ ଗୋଟିଏ ପ୍ରାଥମିକ ଆଧାର ଉପରେ ନିର୍ଭରଶୀଳ, ତାହା ହେଲା ଭାଷାର ନିୟନ୍ତ୍ରଣ କ୍ଷମତା । ଏଥିରୁ ପ୍ରଥମ ଓ ସର୍ବଶ୍ରେଷ୍ଠ ହେଲା, ଭାବୈଶ୍ୱର୍ଯ୍ୟ—ଏକଥା ମୁଁ ଅନ୍ୟତ୍ର ଜେନୋଫୋନଙ୍କ ସମ୍ବନ୍ଧୀୟ ମୋର ଗ୍ରନ୍ଥରେ ଚର୍ଚ୍ଚା କରି ସାରିଛି । ଦ୍ୱିତୀୟଟି ହେଲା ଆବେଗର ସ୍ଫୂର୍ତ୍ତିମୟ ଓ ପ୍ରେରଣାପୂର୍ଣ୍ଣ ବ୍ୟବହାର । ଉଦାତ୍ତର ଉକ୍ତ ଦୁଇଗୋଟି ସର୍ତ୍ତ ମୁଖ୍ୟତଃ ନୈସର୍ଗିକ ଧୀଶକ୍ତି ଉପରେ ନିର୍ଭର କରେ, ଅବଶିଷ୍ଟ ପରବର୍ତ୍ତୀ ତିନିଗୋଟି କଳାର ସହାୟତାରେ ଉତ୍ପନ୍ନ । ତୃତୀୟଟି ହେଲା, ଅଳଙ୍କାର ବିନ୍ୟାସର ନିର୍ଦ୍ଦିଷ୍ଟ କୌଶଳ, ଯାହା ଦୁଇପ୍ରକାର....ଭାବ-ଅଳଙ୍କାର ଓ-ଅଭିବ୍ୟକ୍ତି....ଅଳଙ୍କାର । ଚତୁର୍ଥଟି ହେଲା, ମର୍ଯ୍ୟାଦାସଂପନ୍ନ "ଅଭିବ୍ୟକ୍ତି, ଯାହା ପୁଣି ବିଭକ୍ତ ...(କ) ଉପଯୁକ୍ତ ଶବ୍ଦ ନିର୍ବାଚନ ଓ (ଖ) ରୂପକୀୟର

ପ୍ରୟୋଗ ଓ ଭାଷାଶୈଳୀ ଆଦି । ଉଦାତ୍ତର ପଞ୍ଚମ କାରଣ 'ଯାହା ପୂର୍ବୋକ୍ତ ସକଳ ଗୁଣକୁ ଅନ୍ତର୍ଭୁକ୍ତ କରିଥାଏ, ତାହା ହେଲା, ମହିମାମୟ ଓ ଉତ୍କର୍ଷ ରଚନା ପ୍ରଣାଳୀ । ଏହି ପଞ୍ଚବିଧ ଖଣ୍ଡରେ ପ୍ରତ୍ୟେକଟିର କି ବିଶେଷତ୍ୱ ଏବେ ତାହା ବିଚାର କରିବା କଥା ।

ମୁଁ ପ୍ରଥମେ କହିବି, ଉକ୍ତ ପଞ୍ଚ ବିଭାଗ ମଧ୍ୟରୁ କେତେଗୋଟିକୁ କେକିଲିଉସ୍ ଅନ୍ତର୍ଭୁକ୍ତ କରି ନାହାନ୍ତି । ଉଦାହରଣ ସ୍ୱରୂପ, ସେ ଆବେଗ ବିଷୟରେ କିଛି କହି ନାହାନ୍ତି । ସେ ଯଦି ଏପରି ବିଶ୍ୱାସ କରି ଏହି ଉପେକ୍ଷା କରିଥାନ୍ତି ଯେ, ଉଦାତ୍ତ ଓ ଆବେଗ ଏକ ଓ ସମାନ ବସ୍ତୁ, ସେ ଦୁହେଁ ସର୍ବଦା ସ୍ୱଗତଶଃ ଅବସ୍ଥିତ ତଥା ପରସ୍ପର ନିର୍ଭରଶୀଳ, ତେବେ ସେ ଭ୍ରମରେ ପଡ଼ିଛନ୍ତି । ଏପରି କେତେକ ଆବେଗ ଅଛି ଯେଉଁଗୁଡ଼ିକ ମହାନ୍ ହେବା ଦୂରର କଥା, ବାସ୍ତବରେ ହୀନ, ଯଥା, କରୁଣା, ବିଷାଦ, ଭୟ ଆଦି ; ଅନ୍ୟ ପକ୍ଷରେ, ଆମେ ଦେଖି ପାରିବା (ଅନ୍ୟ ବହୁବିଧ ଦୃଷ୍ଟାନ୍ତ ମଧ୍ୟରୁ) ଉଦାତ୍ତର ଆବେଗ ସହିତ ସାମାନ୍ୟ ସମ୍ବନ୍ଧ ନାହିଁ—ଏଇ ଯେମିତି ଆଲୋଏଅସ୍‌ଙ୍କ ପୁତ୍ରମାନଙ୍କ ସଂପର୍କରେ ଆମର ମହାକବିଙ୍କର ତେଜସ୍ୱିନୀ ଅଭିବ୍ୟକ୍ତି

ପ୍ରଚଣ୍ଡ କ୍ରୋଧରେ ସେମାନେ ଅଲିମ୍ପସ୍ ଗିରିଶୃଙ୍ଗ
ସ୍ଥାପିବାକୁ ବିବିଧ ପ୍ରୟାସରେ, ଆଉ
ତା'ର ବୃକ୍ଷାନ୍ଦୋଳିତ ସହ ଓସାର ଉପରେ ପେଲିୟନକୁ ଉଠାଇବାକୁ,
ଆକାଶ ଆରୋହଣ ପାଇଁ ।

ଏବଂ ଆହୁରି ଭୀଷଣତର ଚରମ ପରିକାଷ୍ଠା :—

ଆଉ ଏବେ ସେମାନେ ଏହାକୁ ସୁସଂପନ୍ନ କଲେ । ବକ୍ତାମାନଙ୍କଠାରେ ମଧ୍ୟ ପ୍ରଶସ୍ତିମୂଳକ ଛନ୍ଦରେ, ଆଉ ତା'ଠାରୁ ଅଧିକ ସୁବିନ୍ୟସ୍ତ ଓ ଭାଷଣଭଙ୍ଗୀସର୍ବସ୍ୱ ସ୍ଥଳମାନଙ୍କରେ ଗରିମା ଓ ଉଦାତ୍ତତା ଏକ ଅପରିହାର୍ଯ୍ୟ ଅଂଶ ରୂପେ କାର୍ଯ୍ୟ କରେ ; ମାତ୍ର ସେଠାରେ ଆବେଗ ଆଦୌ ନଥାଏ । ଏଣୁ ସର୍ବୋତ୍ତମ ଆବେଗୋଚ୍ଛଳ ବକ୍ତା ସାଧାରଣତଃ ପ୍ରଶସ୍ତି ରଚନାରେ ଅନିପୁଣ

ହୋଇଥାନ୍ତି ଓ ଅନ୍ୟପକ୍ଷରେ, ଶକ୍ତିଶାଳୀ ପ୍ରଶସ୍ତିକାରଙ୍କଠାରେ ଆବେଗର ନ୍ୟୂନତା ଦେଖିବାକୁ ମିଳେ । ପକ୍ଷାନ୍ତରେ କୈକିଲିଅସ୍ ଯଦି ମନେ କରିଥିବେ ଯେ, ଉଦାତ୍ତ ନିମନ୍ତେ ଆବେଗର ଦାନ କିଛିନାହିଁ ଓ ଏଥିପାଇଁ ସେ ଏହାକୁ ବିଷୟ ବହିର୍ଭୂତ ବିଚାର କରିଥିବେ ତେବେ ସେ ସଂପୂର୍ଣ୍ଣ ବିଭ୍ରାନ୍ତ ହୋଇଛନ୍ତି । କାରଣ ମୁଁ ଦୃଢ଼ ଭାବରେ କହିବି ଯେ, ଉଦାତ୍ତର ଅନୁକୂଳ ହେବା ପାଇଁ ଅତ୍ୟୁତ୍ତମ ଆବେଗର ସଂଗତ ପ୍ରକାଶ ଠାରୁ ଅଧିକ କିଛି ନାହିଁ, ଯାହାକି ଏକପ୍ରକାର ଉନ୍ମତ୍ତ ଓ ଦିବ୍ୟ-ପ୍ରେରଣା ସହ ବିକ୍ଷିପ୍ତ ହୋଇ ପ୍ରକାଶ ପାଏ ଓ ଆମ କର୍ଣ୍ଣରେ ଦୈବିବାଣୀ ସଦୃଶ ପ୍ରବେଶ କରେ ।

## [୯]

ମୁଁ ପୂର୍ବରୁ କହି ସାରିଛି, ଉଦାତ୍ତର ଏହି ପାଞ୍ଚଗୋଟି ଉତ୍ସ ମଧ୍ୟରୁ ପ୍ରଥମଟି ସର୍ବପ୍ରମୁଖ, ଅର୍ଥାତ୍, ମନର ନିର୍ଦ୍ଦିଷ୍ଟ ଉନ୍ନତ ଅବସ୍ଥା । ଏଣୁ ଯଦିଓ ଏହା ଏପରି ଏକ ଐଶୀଶକ୍ତି ବା ଗୁଣ ଯାହା କେବେହେଲେ ଅର୍ଜିତ ନୁହେଁ ବରଂ ନୈସର୍ଗିକ, ତଥାପି ଏ ସ୍ଥଳରେ ଆମେ ଆମର ଆତ୍ମାକୁ ଉଦାତ୍ତ ଭାବନାରେ ଲାଳିତ ପାଳିତ ଓ ତାହାକୁ ମହତ୍ ଭାବନାରେ ପରିପୂର୍ଣ୍ଣ କରି ରଖିବା ଉଚିତ । ପ୍ରଶ୍ନ ହୋଇପାରେ, ଏହା କିପରି କରିହୋଇପାରେ ? ମୁଁ ଅନ୍ୟତ୍ର ମୋର ଲେଖାରେ ସୂଚିତ କରିଛି, "ଉଦାତ୍ତତା ଆତ୍ମାର ମହାନତାର ପ୍ରତିଧ୍ୱନି ବା ପ୍ରତିରୂପ ।" ଏଣୁ ଅପ୍ରକାଶିତ ଭାବ ମଧ୍ୟ ସ୍ୱୟଂ ସାରଲ୍ୟ ହେତୁ ବେଳେବେଳେ ତାହାର ବିଶୁଦ୍ଧ ଔଦାତ୍ତ୍ୟ ବଳରେ ପ୍ରଶଂସନୀୟ ହୋଇଉଠେ, ଉଦାହରଣ ସ୍ୱରୂପ, ଓଡ଼ିସିରେ ଏକାଦଶ ଭାଗରେ ଅଜାକ୍ସର ନୀରବତା ମହୀୟାନ୍ ଓ ଭାଷାରେ ବ୍ୟକ୍ତ କରିବା ଅପେକ୍ଷା ଅଧିକ ଉଦାତ୍ତ । ଏଥିପାଇଁ ଏହା ନିତାନ୍ତ ଅପରିହାର୍ଯ୍ୟ ଯେ, ସର୍ବପ୍ରଥମେ ଏ ପ୍ରଶ୍ନର ସମାଧାନ କରିବା ଉଚିତ—ଏଇ ମହାନ୍ ଧାରଣାର ଉତ୍ସମୁଖ କେଉଁଠି ? ଏହାର ଉତ୍ତର ହେଲା, ପ୍ରକୃତ ବାଗ୍ମିତା କେବଳ ତାଙ୍କରିଠାରେ ସମ୍ଭବ

ହୋଇଥାଏ ଯାହାଙ୍କର ଆତ୍ମା ଉଦାର ଓ ଉଚ୍ଚାକାଂକ୍ଷୀ । କାରଣ ଯାହାଙ୍କର ସମଗ୍ର ଜୀବନ ନଗଣ୍ୟ ଓ ଅନୁଦାର ଭାବନାରେ ତଥା ଉଦ୍ଦେଶ୍ୟରେ ବ୍ୟୟିତ ସେ କଦାପି ମାନବ ପରଂପରର ଶାଶ୍ୱତ ଭକ୍ତି ଆକର୍ଷଣକାରୀ ରଚନା ସୃଷ୍ଟି କରି ନପାରନ୍ତି । ଯାହାଙ୍କର ଭାବନା ମହିମାବନ୍ତ ତାଙ୍କର ବାଣୀରେ ମହାନତା ପରିପୂର୍ଣ୍ଣ ହୋଇ ଉଠିବା ସ୍ୱାଭାବିକ । ଏଣୁ ଯଥାର୍ଥତଃ ମନସ୍ୱୀମାନେହିଁ ଉଦାତ୍ତ ଭାବନାର ଅଧିକାରୀ । ଆଲେକଜାଣ୍ଡାର ତାଙ୍କର ସେନାପତି ପରମେନିଓଙ୍କୁ ଏହିପରି ଉତ୍ତର ଦେଇଥିଲେ "ମୁଁ ସଂପୂର୍ଣ୍ଣ ସନ୍ତୁଷ୍ଟ ହୋଇପାରିଥାନ୍ତି"····—

ଆକାଶ - ପାତାଳ ପାର୍ଥକ୍ୟ ବୋଲି କୁହାଗଲେ ମଧ୍ୟ ଏହା ହୋମରଙ୍କ ପ୍ରତିଭାର ଅଭ୍ରାନ୍ତ ମାନଦଣ୍ଡ । ହେସିଓଡ୍‌ଙ୍କ ଶୋକ ବର୍ଣ୍ଣନା ଏହାଠାରୁ କେତେ ଭିନ୍ନ (ଢ଼ାଲ ନାମକ ରଚନା ଯଦି ତାଙ୍କର ବୋଲି ଗୃହୀତ ହୁଏ)

ତାହାର ନାକରୁ ସିଂଘାଣି ଝରୁଥିଲା "····ଏ ଚିତ୍ର ଭୟ ପରିବର୍ତ୍ତେ ଜୁଗୁପ୍‌ସା ଜାତ କରେ । ଏବେ ହୋମର କିପରି ତାଙ୍କର ଦୈବତ ପୁରୁଷ-ମାନଙ୍କୁ ଚିତ୍ରଣ କରିଛନ୍ତି ଏଥି ସହିତ ବିଗ୍ରହ କର····

ଯେ ପର୍ଯ୍ୟନ୍ତ ଲମ୍ବିଛି ତା ସ୍ପଷ୍ଟ ଜଳରାଶି, ଆସୀନ ସେ
ବହୁଦୂର ଶିଳାରେ, ସୁବିକ୍ରାନ୍ତ ସାଗରକୁ ନିରୀକ୍ଷଣ କରି
ସେ ଯାଏ ବ୍ୟାପିଛି ଦିବ୍ୟ ଅଶ୍ୱଙ୍କର ଦୀର୍ଘ ପଦ ବିକ୍ଷେପ ।

ସମଗ୍ର ବିଶ୍ୱର ବ୍ୟାପ୍ତି ଦ୍ୱାରା ସେ ସେମାନଙ୍କର ଗତିବେଗକୁ ପରିମାପ କରିଛନ୍ତି ।····ଏକ ମହତ୍ ତୁଳନା, ଯାହାକୁ ପଢ଼ି ଆମେ ଯଥାର୍ଥରେ କହିଉଠୁ, "ଯେ ସ୍ୱର୍ଗୀୟ ଅଶ୍ୱମାନେ ଯଦି କ୍ରମାଗତ ଦୁଇଥର ଏହିପରି ଲମ୍ଫ ଦିଅନ୍ତି ତା'ହେଲେ ସେମାନେ ଜଗତର ସୀମା ପାର ହୋଇଯିବେ ।" "ଦେବତାମାନଙ୍କର ସମର ରେ ମଧ୍ୟ ହୃଦ୍ୟୋବଳୀ ଅତ୍ୟନ୍ତ ଉଦାତ୍ତ

ଟେକୋହାଲୀର ନିର୍ଦ୍ଦିଷ୍ଟ ଆକାଶ ଦେଶ, ଅଲିମ୍ପିକର ଶିଖର କର
ପ୍ରକମ୍ପିତ

ଶୁଣି ତାହା ମୃତ୍ୟୁ-ସମ୍ରାଟ୍, କଂପିଲେ ଆତଙ୍କେ

ଲମ୍ଫ ଦେଇ ସିଂହାସନୁ ହାସ୍ୟପ୍ରଦ ସ୍ୱରେ କାନ୍ଦିଲେ ସେ

କାଳେ ବରୁଣର ପରାକ୍ରମୀ ବାହୁ ପୃଥିବୀକୁ କରିବ ବିଦୀର୍ଣ୍ଣ—

ତତ୍‌କ୍ଷଣାତ୍ ପ୍ରକଟିତ ହେବ ଦେବ ନର ଚକ୍ଷେ

ସେହି ଭୟଙ୍କର କନ୍ଦାକାର ଆର୍ଦ୍ର ସଭାଗୃହ ଯାହା
ଦେବତାମାନଙ୍କର ମଧ୍ୟ ଘୃଣ୍ୟ ।

ପୃଥିବୀ ତାହାର ମୂଳାଧାରଠାରୁ ବିଚ୍ଛିନ୍ନ । ପାତାଳଲୋକ ସ୍ୱୟଂ ଉନ୍ମୁକ୍ତ । ସମଗ୍ର ବିଶ୍ୱ ଖଣ୍ଡ ବିଖଣ୍ଡିତ ତଥା ଆବର୍ତ୍ତିତ ! କାହିଁକି, ମୋର ପ୍ରିୟବନ୍ଧୁ, ଏହା ତ ସଂପୂର୍ଣ୍ଣ ବିଶୃଙ୍ଖଳା, ଯେଉଁଥିରେ କି ସମଗ୍ର ସୌର-ଜଗତ୍ – ସ୍ୱର୍ଗ ଓ ନର୍କ, ନର ଓ ଅମର – ଏଇ ସଂଘର୍ଷ ଓ ସଂକଟରେ ଅଂଶ ଗ୍ରହଣ କରିବା ପରି ପ୍ରସ୍ତୁତ ହେଉଛନ୍ତି । ନିଶ୍ଚିତ ରୂପେ ଏହା ଏକ ଭୟାନକ ଚିତ୍ର ; ମାତ୍ର ଅନ୍ୟ ଦୃଷ୍ଟିରୁ (ଯଦି ଏହାକୁ ରୂପକାତ୍ମକ ଭାବେ ଗ୍ରହଣ କରା ନଯାଏ ) ଏହା ଆମୂଳଚୂଳ ଧର୍ମନିଷ୍ଠାବିହୀନ ଓ ଔଚିତ୍ୟର ସୀମା ଲଂଘନ କରିଥାଏ । ମୋତେ ଲଗୁଛି, ହୋମର୍‌ସ୍ୱୟଂ ପରଂପରାର ଦେବତାମାନଙ୍କୁ ହୋମର ଆଘାତ, କଳହ, ପ୍ରତିହିଂସା, ଶୋକ, ବନ୍ଧନ ଓ ଅନ୍ୟବିଧ ଦୁର୍ଘଟଣର ଅଦ୍ଭୁତ ମିଶ୍ରଣ ଦ୍ୱାରା ସୃଷ୍ଟି କରି ଯଥା ସମ୍ଭବ ଦେବତାମାନଙ୍କୁ ମନୁଷ୍ୟରୂପେ ଅଧଃପତିତ ଓ ମନୁଷ୍ୟଙ୍କୁ ଦେବତା ରୂପେ ଉନ୍ନୀତ କରି ଦେଇଛନ୍ତି—କିମ୍ବା ତାଙ୍କର ଦେବତାମାନେ ମନୁଷ୍ୟମାନଙ୍କଠାରୁ ଅଧିକତର ଦୁରବସ୍ଥାସଂପନ୍ନ । କାରଣ ଆମେ ମର୍ତ୍ତ୍ୟବାସୀମାନେ ଦୁର୍ଭାଗ୍ୟର ଶିକାର ହେଲେ ମୃତ୍ୟୁବରଣ କରି କଷ୍ଟରୁ ଉଦ୍ଧାର ପାଇବା ବିଧାନ ଥିବାବେଳେ ହୋମରଙ୍କ ଦେବତାମାନେ କେବଳ ଚିରକାଳ ଜୀବିତ ରହନ୍ତି ନାହିଁ ବରଂ ଦୁଃଖ ଯନ୍ତ୍ରଣାରେ ବି ଅମର ରହିଥାନ୍ତି । ଦେବତାମାନଙ୍କର ସଂଗ୍ରାମ – ସମ୍ପର୍କିତ ଉକ୍ତ ବର୍ଣ୍ଣନା

ଅପେକ୍ଷା ସେଇ ଅଂଶଗୁଡ଼ିକ ଅଧିକ ଆଦରଣୀୟ ଯେଉଁଠାରେ ଧୈର୍ଯ୍ୟସ୍ୱଭାବ ତାହାର ବାସ୍ତବ ଆଲୋକରେ ପ୍ରକଟିତ,—ଯାହା ନିଷ୍କଳଙ୍କ, ମହାନ୍ ଓ ଦୈବୀ—ଉଦାହରଣ ସ୍ୱରୂପ, ପୋସେଇଦନ୍‌ଙ୍କ ସମ୍ବନ୍ଧୀୟ ଅଂଶ ଯାହା ମୋର ପୂର୍ବସୂରୀମାନେ ବିଚାର କରିସାରିଛନ୍ତି –

ପର୍ବତମାଳା, ଅରଣ୍ୟାନୀ, ବିବିକ୍ତ ତୁଙ୍ଗ ଶିଖରୀ
ଅଖେୟାର ପୋତପଂକ୍ତି, ଟ୍ରୟର ସମୁନ୍ନତ ଦୁର୍ଗଶ୍ରେଣୀ
ଦେବର୍ଷିଙ୍କ ଅମର୍ତ୍ତ୍ୟ ଚରଣତଳେ ହେଲେ ପ୍ରକଂପିତ ।
ତଥାପି ସେ ତରଙ୍ଗ ଭଙ୍ଗ କାଟି ସେ ଗଲେ, ଚତୁଃପାର୍ଶ୍ୱେ ତାର ଖେଳି
ବୁଲିଲେ ସାମୁଦ୍ରିକ ଭୀଷଣାକୃତି ଜନ୍ତୁମାନେ ଗଭୀର ଗହ୍ୱରୁ ପ୍ରଲୋଭିତ
ହୋଇ, ଅବୁଝା ଆନନ୍ଦ ନର୍ତ୍ତନେ ସ୍ୱାଗତ ଜଣାଇ ରାଜାରେ ତାଙ୍କର
ଆନନ୍ଦଉଚ୍ଛଳ ସିନ୍ଧୁ ଉଚ୍ଛଳ ତରଙ୍ଗ ହେଲା ଦ୍ୱିଧା ବିଭକ୍ତ
ତହିଁ ମଧ୍ୟେ ରଥ ଅଶ୍ୱ ଅନ୍ତର୍ନମି ଗଲେ ।

ଏହିପରି ଇହୁଦୀମାନଙ୍କର ଧର୍ମ-ଦାତା, ଯେ କି ସାମାନ୍ୟ ବ୍ୟକ୍ତି ନଥିଲେ, ପରମପୁରୁଷଙ୍କ ସମ୍ବନ୍ଧରେ ଉପଯୁକ୍ତ ଧାରଣା ସ୍ଥିରକରି ତତ୍ପ୍ରଣୀତ 'ଧର୍ମଗ୍ରନ୍ଥ'ର ପ୍ରାରମ୍ଭରେ ସମୁଚିତ ଅଭିବ୍ୟକ୍ତି ଦାନ କରିଥିଲେ—"ଈଶ୍ୱର କହିଲେ"—କ'ଣ କହିଲେ ?—"ଆଲୋକ ପ୍ରକାଶିତ ହେଉ, ଆଉ ଆଲୋକ ପ୍ରକାଶିତ ହେଲା ଭୂମି ପ୍ରକଟ ହେଉ, ଆଉ ଭୂମି ପ୍ରକଟ ହେଲା ।"

ମୁଁ ଯଦି ଆଉ ଗୋଟିଏ ଅଧିକ ଅଂଶ ଆମର ମହାକବିଙ୍କ ରଚନାରୁ ଉଦ୍ଧାର କରେ (ଏଥର ମୋର ଲକ୍ଷ୍ୟ ମାନବୀୟ ଚରିତ୍ର) ମୋ କଥା ତମ ପାଇଁ ବିରକ୍ତିକର ହେବ ନାହିଁ ବୋଲି ମୋର ବିଶ୍ୱାସ । ସେ ଆମକୁ କି ଭାବେ ତାଙ୍କ ଚରିତ୍ରେ ବୀରତ୍ୱପୂର୍ଣ୍ଣ ପରିକାଷ୍ଠା ସହିତ ପରିଚୟ କରାଇ ଦିଅନ୍ତି ତାହିଁରୁ

କଟାଯିବ । ତାଙ୍କ କାବ୍ୟରେ ଯୁଦ୍ଧସ୍ଥ ଗ୍ରୀକ୍‌ମାନଙ୍କର ସୈନ୍ୟବାହିନୀ ଉପରେ ଅପ୍ରତ୍ୟାଶିତ ଭାବେ ଅନ୍ଧକାର ରାତ୍ରିର ବହଳ ଆସ୍ତରଣ ପଡ଼ିଯାଇଛି । ସେହି ସମୟରେ ଅଜାକ୍‌ସ ଉତ୍କଟ ଯନ୍ତ୍ରଣାରେ ଉଚ୍ଚକଣ୍ଠରେ ଡାକ ଉଠିଛି—

ହେ ସର୍ବଶକ୍ତିମାନ୍ ପିତଃ
ରକ୍ଷାକର ଏଇ ଅନ୍ଧକାରୁ ଅଚେଆ ତନୟେ
ଦିବସର ଆଲୋକ ଫେରାଇ ଦିଅ ହେ ଆମକୁ,
ନ ମାଗଇ ଅଧିକ ମୁଁ କିଛି ;
ବଧ କରିବାକୁ ଇଚ୍ଛା କର ଯଦି, ବଧ କର ତେବେ,
ମାତ୍ର ଦୃଷ୍ଟିଶକ୍ତି ଦିଅ ହେ ଆମକୁ ।

ଅଜାକ୍‌ସଠାରୁ ଆମେ ଯାହା ଆଶା କରିବା କଥା ଏହା ତଦନୁରୂପ ଖାଣ୍ଟି ଅନୁଭବ । ତୁମେ ଲକ୍ଷ୍ୟ କର, ସେ ନିଜ ଜୀବନ-ଭିକ୍ଷା କରିନାହିଁ,—ଏପରି ପ୍ରାର୍ଥନା ତାହାର ବୀର-ଆତ୍ମାର ଅନୁପଯୁକ୍ତ ହୋଇଥାନ୍ତା । ମାତ୍ର ଅନ୍ଧକାର ହେତୁ ନିଜକୁ ଅକର୍ମଣ୍ୟ ମନେକରି ଓ ନିଜର ପରାକ୍ରମକୁ କୌଣସି ମହତ୍ କାର୍ଯ୍ୟରେ ଉପଯୋଗ କରି ନ ପାରି ତାହାର ବାହୁର ଆଳସ୍ୟ ନିମନ୍ତେ ସେ ଅଧୀର ହୋଇ ଉଠିଛି ଓ ସହସା ଆଲୋକ ଫେରି ପାଇବା ପାଇଁ ପ୍ରାର୍ଥନା କରୁଛି । ସେ ଭାବୁଛି, "ମୋ ସହିତ ସ୍ୱୟଂ ଜେଉସ୍ ଆସି ସଂଗ୍ରାମ କଲେ ମଧ୍ୟ ଅନ୍ତତଃ ମୁଁ ବୀରର ଅନୁରୂପ ମୃତ୍ୟୁ ବରଣ କରେ ।" ଏହିପରି ବର୍ଣ୍ଣନା ସ୍ଥଳମାନଙ୍କରେ କବିର କଳ୍ପନା ସଂଗ୍ରାମର ଘୂର୍ଣ୍ଣିବାୟୁ ସହିତ ଘୁରି ବୁଲୁଛି ଓ ତାଙ୍କ ନିଜ ଭାଷାରେ, ସେ

କ୍ରୁଦ୍ଧ ସଂଗ୍ରାମ-ଦେବତା ପ୍ରାୟ ଗର୍ଜମାନ
ଅଥବା ପର୍ବତ-କନ୍ଦର ମଧ୍ୟେ ନିଧିଷ୍ଣ
ଅରଣ୍ୟାନୀକୁ ଧ୍ୱଂସକାରୀ ଦାବାଗ୍ନି ;
ଓଷ୍ଠରୁ ତାଙ୍କ ଝରୁଅଛି ଫେନ ।

ମାତ୍ର ହୋମରଙ୍କ କବି-ମାନସର ଅନ୍ୟ ଏକ ବିଶିଷ୍ଟ ଦିଗ ପ୍ରତି ଧ୍ୟାନ ଦେବା ଉଚିତ । ଅଡ଼ିଶୀ କାବ୍ୟଗ୍ରନ୍ଥ ପାଠକଲେ ଆମେ ଲକ୍ଷ୍ୟ କରିବା ଯେ, କୌଣସି ମନୀଷୀ ପ୍ରତିଭା ବାର୍ଦ୍ଧକ୍ୟରେ ଶକ୍ତିର ହ୍ରାସ ହେତୁ ସ୍ୱଭାବତଃ ଅନ୍ତରଂଗତ ବିଷୟ ପ୍ରତି ଆକୃଷ୍ଟ ହୋଇଥାଏ । କେତେକ କଥାରୁ ସ୍ପଷ୍ଟ ହୁଏ ଯେ, ଇଲିୟାଡ୍ ପରେ ଉକ୍ତ ଗ୍ରନ୍ଥ ରଚିତ ହୋଇଥିଲା । ଏହି ପ୍ରମାଣ ବଳରେ ଅନ୍ୟ କେତେକ ସୂଚନା ମଧ୍ୟରୁ ଆମେ କହିପାରୁ ଯେ, ଅଡ଼ିଶୀ କାବ୍ୟରେ ଟ୍ରୟ ଯୁଦ୍ଧର ବୀରମାନଙ୍କର ଦୁଃସାହସିକ କାର୍ଯ୍ୟକଳାପର ବର୍ଣ୍ଣନା ରହିଛି ଯାହାକି ଟ୍ରୟ-ଯୁଦ୍ଧର ବହୁବିଧ ଅତିରିକ୍ତ ଶାଖା ବୃତ୍ତାନ୍ତ । ବିଶେଷତଃ କବି ନିଜର ମୃତ ବୀରମାନଙ୍କ ପ୍ରତି ସ୍ୱକୀୟ କୌଣସି ପୂର୍ବ-ପରିକଳ୍ପନାର ପୂର୍ଣ୍ଣତା ସଂପାଦନ ନିମନ୍ତେ ଉକ୍ତ କାବ୍ୟରେ ଶୋକ ଓ ବିଳାପ ରୂପରେ ଶ୍ରଦ୍ଧାଂଜଳି ଦେଇଛନ୍ତି । ବସ୍ତୁତଃ ଅଡ଼ିଶୀ କାବ୍ୟ ଇଲିୟାଡ୍‌ର ଉପସଂହାର ମାତ୍ର

ବୀର ଅଜକ୍ସ ଶାୟିତ ତହିଁ, ଏକିଲସ୍ ତହିଁ,
ଦେବ ସମ ମନ୍ତ୍ରଣାଦାତା ପେଟ୍ରୋକ୍ଲସ୍ ଶାୟିତ ସେଠାରେ,
ମୋ ନିଜର ପ୍ରିୟ ପୁତ୍ର ସେଠାରେ ଶାୟିତ !

ଏହି ହେତୁ ମୋର ଅନୁମାନ, କବିଙ୍କର ପ୍ରତିଭାର ଚରମୋତ୍କର୍ଷ କାଳରେ ଇଲିୟାଡ୍ ରଚିତ ହୋଇଥିଲା ତଥା କାବ୍ୟର ସମଗ୍ର ଗଠନ କାର୍ଯ୍ୟ ଓ ସଂଘର୍ଷ ଉପରେ କେନ୍ଦ୍ରୀଭୂତ ହୋଇଥିଲା । ଅନ୍ୟ ପକ୍ଷରେ, ଅଡ଼ିଶୀରେ ସେ ସାଧାରଣତଃ ବାର୍ଦ୍ଧକ୍ୟସୁଲଭ ବର୍ଣ୍ଣନାତ୍ମକ ଶୈଳୀ ପସନ୍ଦ କରିଛନ୍ତି । ଏଣୁ ଅଡ଼ିଶୀରେ ହୋମରଙ୍କୁ ଅସ୍ତୋନ୍ମୁଖୀ ସୂର୍ଯ୍ୟଙ୍କ ସହିତ ତୁଳନା କରିଯାଇ-ପାରେ । ସେ ପୂର୍ବଭଳି ମହାନ୍ ; ମାତ୍ର ତାଙ୍କଠାରେ ନାହିଁ ସେଇ ଜ୍ୱଳନ୍ତ ଉତ୍ତାପ । ଅଡ଼ିଶୀରେ ନାହିଁ 'ସ୍ୱର୍ଗୀୟ ଟ୍ରୟ କାହାଣୀ'ର ଉଦାତ୍ତ ସ୍ୱର । ଆମେ ହରାଇ ବସୁ କାବ୍ୟବ୍ୟାପୀ ଉଦାତ୍ତ ଭାବନାର ସେହି ଉଚ୍ଚ ସମସ୍ଥିରତା, ଗତିଶୀଳ ଘଟଣାବଳୀର କ୍ରମାନ୍ୱୟ ପ୍ରବାହ, ଦ୍ରୁତ ପରିବର୍ତ୍ତନ, ପ୍ରବର୍ତ୍ତନାତ୍ମକ ଉକ୍ତି ତଥା ଚିତ୍ରକଳ୍ପର ପ୍ରାଚୁର୍ଯ୍ୟ····ଯାହା ବାସ୍ତବ ଜୀବନରୁ ଗୃହୀତ । ଅପ-

ସୂର୍ଯ୍ୟମାନଙ୍କ ସମୁଦ୍ର ବେଳାଭୂମିକୁ ନଗ୍ନ ଓ ଶୂନ୍ୟ କରି ନିଜ ଗର୍ଭକୁ ଫେରିଗଲା ଭଳି ଉଦାତ୍ତର ଜୁଆରରେ ଭଟ୍ଟା ପଡ଼ିଯାଏ ଓ ଆମକୁ କାଳ୍ପନିକ ଓ ଉପ-କଥାର ଅସ୍ପଷ୍ଟ ଜଗତରେ ବିଚରଣ କରାଏ । ଏ କଥା କହିଲାବେଳେ ମୁଁ ଅଡ଼ିଶୀ-ବର୍ଣ୍ଣିତ ବାତ୍ୟା ବର୍ଣ୍ଣନାର ଅଂଶ ତଥା କ୍ୟୁକ୍ଲୋପ କାହାଣୀର ଚିତ୍ତା-କର୍ଷକ ସ୍ଥଳଗୁଡ଼ିକୁ ବିସ୍ମୃତ ହୋଇନାହିଁ । ମୁଁ ଏଠାରେ ବାର୍ଦ୍ଧକ୍ୟରେ ଉପନୀତ ହୋମରଙ୍କ କଥା ଆଲୋଚନା କରୁଛି ; ମାତ୍ର ତଥାପି ବାର୍ଦ୍ଧକ୍ୟରେ ସେ ହିଁ ହୋମର । ତଥାପି ଏହି ସକଳ ସ୍ଥଳମାନଙ୍କରେ ବାସ୍ତବ ଅପେକ୍ଷା କାଳ୍ପନିକତା ପ୍ରାଧାନ୍ୟ ଲାଭ କରିଛି ।

ମୂଳ ବିଷୟରୁ ବିଚ୍ୟୁତ ହୋଇ ଏ କଥା କହିବାର ଉଦ୍ଦେଶ୍ୟ ହେଲା—ମୁଁ ପୂର୍ବରୁ କହିଛି.... ମହାନ୍ ପ୍ରତିଭା କପରି ହ୍ରାସାବସ୍ଥା ପ୍ରାପ୍ତ ହେଲେ ତୁଚ୍ଛ ବିଷୟର ମୋହରେ ବିଭ୍ରାନ୍ତ ହୁଅନ୍ତି । ଦୃଷ୍ଟାନ୍ତ ସ୍ୱରୂପ, ପବନକୁ ଥଳୀ ମଧ୍ୟରେ ଆବଦ୍ଧ ରଖିବା ଘଟଣା, ଅଡ଼ିସିଅସ୍‌ର ସହଚରମାନଙ୍କୁ ସିର୍ସିର ଶୂକର ରୂପେ ରୂପାନ୍ତରିତ କରିଦେବା କଥା, (ଯେଉଁମାନଙ୍କୁ ଜୋଇଲସ୍ କହୁଥିଲେ, କେଁ କେଁ କରୁଥିବା ଘୁସୁରି) ଅଥବା ଜେଉସ୍ ପାରାବତମାନଙ୍କ ଦ୍ୱାରା ଶାବକ ରୂପେ ପରିପାଳିତ ହୋଇଥିବା କଥା, ଆଉ ଭଗ୍ନପୋତରେ ଅଡ଼ିସିଅସ୍ କପରି ନଖାଇ ନପିଇ ଦଶଦିନ କଟାଇଥିଲେ ତଥା ପାଣିପ୍ରାର୍ଥୀ-ମାନଙ୍କର ହତ୍ୟାର ଅବିଶ୍ୱାସୀ ବ୍ୟାପାର—ଏହି ସବୁ ପ୍ରସଙ୍ଗ ଉଲ୍ଲେଖ କରିଯାଇପାରେ । ହୋମର ଯେତେବେଳେ ଏହି ଭାବେ ସମ୍ମତ ଦଅନ୍ତି ଆମେ ସନ୍ତୋଷର ସହ କହିବା ଯେ, ଜେଉସ୍ ଯେପରି ସ୍ୱପ୍ନ ଦେଖନ୍ତି ହୋମର ସେହିପରି ସ୍ୱପ୍ନ ଦେଖନ୍ତି । ମୁଁ ତୁମର ହୃଦୟଙ୍ଗମ କରିବାକୁ ଚାହେଁ ଯେ, ମହାକବି ଓ ଗଦ୍ୟସ୍ରଷ୍ଟାମାନେ ଭାବାବେଗରେ ଅଭିବ୍ୟକ୍ତି ଦାନର ଶକ୍ତି ହରାଇବା ପରେ ସ୍ୱଭାବତଃ ଚରିତ୍ର ଚିତ୍ରଣ ପ୍ରତି ଉନ୍ମୁଖ ହୋଇଥାନ୍ତି । ଏ କଥାର ଉଦାହରଣ ହେଲା – ଅଡ଼ିସିଅସ୍‌ର ପ୍ରାସାଦର ଜୀବନ୍ତ ଓ ବୈଶିଷ୍ଟ୍ୟ-ପୂର୍ଣ୍ଣ ଚିତ୍ର—ଏହାକୁ ଏକ ପ୍ରକାର ଆଚରଣଗତ ପ୍ରହସନ କୁହାଯାଇପାରେ ।

# [୧୦]

ସଂପ୍ରତି ଆମେ ରଚନାରେ ଔଦାତ୍ତ୍ୟ ନାମନ୍ତେ ଅନୁକୂଳ ଏପରି କୌଣସି ବସ୍ତୁ ଅଛି କି ନାହିଁ ବିଚାର କରିବା । ପ୍ରତ୍ୟେକ ବସ୍ତୁରେ ପ୍ରକୃତିର ନିୟମ ଅନୁଯାୟୀ ଏପରି କେତେକ ଉପାଦାନର ଅଂଶ ରହିଛି ଯାହା ସେଗୁଡ଼ିକର ଅବଚ୍ଛେଦ୍ୟ ଅଙ୍ଗ । ତେଣୁ ଏହା ନିଶ୍ଚିତ ଯେ, ଔଦାତ୍ତ୍ୟର ଗୋଟିଏ କାରଣ ହେଲା, ଯାହା କିଛି ଆମର ବର୍ଣ୍ଣମୟ ଢଙ୍ଗରେ ବସ୍ତୁର ସର୍ବୋତ୍ତମ ଚିତ୍ତାକର୍ଷକ ସ୍ଥିତିର ନିର୍ବାଚନ ଆଉ ତା'ପରେ ସେଗୁଡ଼ିକୁ ଏକ ସଂଗଠିତ ଜୀବନ୍ତ ସମଗ୍ରତା ଦାନ କରିବାର କ୍ଷମତା । ପ୍ରଥମଟି ଦ୍ୱାରା ପାଠକ ଅଂଶତଃ ଘଟଣାର ନିର୍ବାଚନ ଓ ଦ୍ୱିତୀୟଟିରେ ସଂଘଟନକାରୀ ନୈପୁଣ୍ୟରେ ଆକୃଷ୍ଟ ହୁଏ । ଉଦାହରଣ ସ୍ୱରୂପ, ନାୟିକାବ ସାପୋ ପ୍ରେମିକ ପ୍ରେମିକା-ମାନଙ୍କର ମାନସିକ ଅସ୍ଥିରତାରେ ଦେଖିବାକୁ ମିଳୁଥିବା ଅନୁରାଗପ୍ରବଣ ଅଭିବ୍ୟକ୍ତିବଳକୁ ରୂପ ଦେବାବେଳେ ଏଇ ସବୁ ଅବସ୍ଥାରେ ବାସ୍ତବରେ ଯାହା ପ୍ରକାଶ ପାଇଥିବା ସେ ଲକ୍ଷ୍ୟ କରିଥାନ୍ତି ସେଇ ସବୁ ଲକ୍ଷଣରୁ ଚୟନ କରି ଅଙ୍କନ କରିଥାନ୍ତି; ମାତ୍ର ଯେଉଁ କୌଶଳ ଦ୍ୱାରା ସେ ଅତ୍ୟନ୍ତ ହୃଦୟଗ୍ରାହୀ ଶକ୍ତିଶାଳୀ ଲକ୍ଷଣଗୁଡ଼ିକୁ ସଂଗ୍ରହ ଓ ଏକୀକରଣ କରନ୍ତି ତହିଁରେ ତାଙ୍କର ଅସାଧାରଣ ଉତ୍କର୍ଷ ନିହିତ ।

ସେଇ ପୁରୁଷଙ୍କୁ ବିଚାରେ ମୁହିଁ ଦେବତାଶିରୋଧନ୍ୟ
ଯିଏ ତେ ଆସୀନ ଯେହୁ ନିରେଖନ୍ତି ତୋ ଆନନ
ଶ୍ରବଣ କରନ୍ତି ତୋର ଅଧରେ ଆବେଗୋଚ୍ଛଳ ଆଳାପ
ଆଉ ଝଲକନ୍ତି ତୋର ମଧୁର ସ୍ମିତ ।
ହାୟ ଲେ ଥରେ ମୋର ଅନ୍ତସ୍ଥଳେ
ବଧୂର ହୃଦୟ ମୋର କମ୍ପାଇ ବ୍ୟାକୁଳେ;

ନମିଷ ଦର୍ଶନେ ତାଙ୍କୁ ବାଣୀ ମୋର ଭଙ୍ଗେ
ମୂକ, ଦୁର୍ବଳ, କମ୍ପି ଉଠେ !
ରସନା ମୋ ମୌନଭୂତ, ସର୍ବାଙ୍ଗରେ ମୋର
କ ଏକ ରହସ୍ୟ ଅଗ୍ନି ଯାଉଛି ସଞ୍ଚରି;
ଘୋର ଅନ୍ଧକାରେ ନୟନ ମୋ ଘୂରିଆସି ବୁଜୁଅଛି
କ ରହସ୍ୟ ଅନୁରଣନେରେ ଶ୍ରବଣ ମୋ ଅଭିଭୂତ;
ଶିଶିର ସିକ୍ତ ସମ ସକଳ ଅଙ୍ଗ ଗୋ ମୋର ଅବସାଦଗ୍ରସ୍ତ
ମୋର ସର୍ବାବୟବବ୍ୟାପୀ ଏକ ଶୀତଳ ଶିହରଣ
ତୃଣଶୁଠାରୁ ପାଣ୍ଡୁର ହୋଇଉଠେ ମୋର ଗଣ୍ଡଦେଶ
ମରଣ ଆସନ୍ନ ପ୍ରାଏ ପ୍ରତେ ହୁଏ ମୋର

ଏହା କ'ଣ ବିସ୍ମୟକର ନୁହେଁ ଯେ କବିର ସେହି ଏକ ମୁହୂର୍ତ୍ତରେ ଆତ୍ମା, ଦେହ, କର୍ଣ୍ଣ, ଜିହ୍ୱା, ଚକ୍ଷୁ, ରଙ୍ଗ— ସବୁକିଛି ତାଙ୍କୁ ହରାଇବାକୁ ବସିଛି ଓ ସେସବୁ ସତେକି ତାଙ୍କର ନିଜର ନୁହନ୍ତି ? ଆହୁରି ମଧ୍ୟ ଲକ୍ଷ୍ୟକର, ତାଙ୍କର ସମ୍ବେଦନାବଳୀ କିପରି ପରସ୍ପରର ବିରୁଦ୍ଧାଚରଣ କରୁଛନ୍ତି – ସେ ଶୀତଳ ଓ ଉତ୍ତପ୍ତ, ଅସଂଯତ ଓ ବିଚାରବୁଦ୍ଧି ସମ୍ପନ୍ନ, ପୁଣି ସବୁଗୁଡ଼ିକ ସେହି ଏକ କାଳରେ । ଏହି ବର୍ଣ୍ଣନାର ଉଦ୍ଦେଶ୍ୟ ହେଲା, ସେ କୌଣସି ନିର୍ଦ୍ଦିଷ୍ଟ ଆବେଗ ନୁହେଁ, ମାତ୍ର ବହୁବିଧ ଆବେଗର ସଙ୍ଘାତରେ ତାଡ଼ିତ ବୋଲି ପ୍ରଦର୍ଶନ କରିବା । ଏ ସକଳ ଲକ୍ଷଣ ପ୍ରେମାବେଗର ଅନ୍ତର୍ଗତ; ମାତ୍ର ମୁଁ ପୂର୍ବରୁ କହିଛି, ପ୍ରଭାବଶାଳୀ ଭାବର ଚୟନ ଓ ସେଗୁଡ଼ିକୁ ଗୋଟିଏ ପୂର୍ଣ୍ଣାଙ୍ଗ ରୂପରେ ପରିଣତି ଦାନ କରିବାରେହିଁ ସାଫୋଙ୍କର ଉପଯୁକ୍ତ ଗୀତି କବିତାର ପୂର୍ଣ୍ଣତା ସାଧିତ ହୋଇଛି । ସେହିପରି ହୋମର ତାଙ୍କର ବାତ୍ୟା-ବର୍ଣ୍ଣନାରେ ସର୍ବଦା ଭୟଙ୍କର ପରିସ୍ଥିତିଗୁଡ଼ିକୁ ନିର୍ବାଚନ କରିଥାନ୍ତି । 'ଅରିମସପେୟା'ର କବି ବିରାଟତା ସୃଷ୍ଟି ଅଭିପ୍ରାୟରେ ନିମ୍ନୋକ୍ତ ପଂକ୍ତିରେ ପ୍ରୟତ୍ନ କରିଛନ୍ତି—

କି ଏକ ଅଦ୍ଭୁତ ବସ୍ତୁ ଘଟୁଥିବା ଦେଖୁଛୁ ଏଠାବେ,
ମାନବ ରହିଛି ଆବାସ ପୃଥ୍ୱୀଠାରୁ ବହୁଦୂରେ ଗଭୀର ସାଗରବକ୍ଷରେ
ଅବାଧ ଭ୍ରମଣ ଅର୍ଥେ ଦୁଃସାହସିକ ଉଦ୍ୟମରେ ବ୍ୟସ୍ତ
ବ୍ୟାକୁଳ ହୃଦୟେ ରହି ଶ୍ରମସାଧ୍ୟ ଜାଗରଣେ;
ଉତ୍ତୁଙ୍ଗ ତାରକିତ ଗଗନରେ ସେମାନଙ୍କ ଦୃଷ୍ଟି ନିବଦ୍ଧ,
ସାଗରର ଉଚ୍ଛ୍ୱଳ ତରଙ୍ଗର ଶିକାର ଦୃଷ୍ଟି ସେମାନଙ୍କ
ଜୀବନ ପାଇଁ କ୍ଷୁଧିତ;
ପ୍ରତ୍ୟେକ କମ୍ପିତ ହତଭାଗା କ୍ରନ୍ଦନ ଦମନ କରି
ସ୍ୱର୍ଗର କରୁଣା ପ୍ରାର୍ଥନା କରିବା ପ୍ରୟାସରେ
ବିନମିତ ହସ୍ତ ପ୍ରସାରିତ କରିଛନ୍ତି
ବର୍ଣ୍ଣନା କରିଇ ଯେବେ ମର୍ମମୂଳ ତାର
ବହୁ ଦାରୁଣ ଅନ୍ତର୍ବେଦନା ।

ଏହି ବର୍ଣ୍ଣନାରେ ଭୟ ଯେତେ ନାହିଁ ତାଠାରୁ ଅଧିକ ଅଳଙ୍କାର ଥିବା ଲକ୍ଷ୍ୟ କରିଯାଏ ।

ଏବେ ଆମେ ହୋମରଙ୍କ ପ୍ରତି ଦୃଷ୍ଟି ଫେରାଇବା । ବୈଚିତ୍ର୍ୟ ପ୍ରଦର୍ଶନ ନିମନ୍ତେ ଗୋଟିଏ ଉଦାହରଣ ଯଥେଷ୍ଟ

ଲମ୍ଫ ଦେଲା ସେ ସେମାନଙ୍କ ଉପରେ, ଲମ୍ଫ ଦିଏ ଯଥା
ପବନତାଡ଼ିତ ଅସ୍ଥିର ତରଙ୍ଗ,
କୃଷ୍ଣବର୍ଣ୍ଣ ମେଘ ତଳୁ ଦ୍ରୁତଗାମୀ ଜାହାଜ ଉପରେ,
ଆଉ ଲୁଚାଇ ଦିଏ ତାହାକୁ ଫେନପୁଞ୍ଜ ତଳେ;
ପ୍ରଚଣ୍ଡ ବାୟୁ ପ୍ରବାହେ ଗର୍ଜିଉଠେ ପାଲ
ରୁଦ୍ଧଶ୍ୱାସ-ନାବିକଦଳଙ୍କ ହୃଦୟ ପ୍ରକମ୍ପିତ ହୁଏ,
ଦାରୁଣ ଭୟରେ; ପ୍ରତିଟି ତରଙ୍ଗେ ନାଚେ ମୃତ୍ୟୁର ଭ୍ରୂକୁଟି ।

ଶ୍ଲେଷୋକ୍ତି ଭାବନାକୁ ଅରଭୁସ୍ ଏକ ନୂତନ ଭଙ୍ଗୀ ପ୍ରଦାନ କରିବାକୁ ଚେଷ୍ଟା କରିଛନ୍ତି—

ଦୁର୍ବଳ କାଷ୍ଠଖଣ୍ଡ ମାତ୍ର ରକ୍ଷାକରେ ତାଙ୍କୁ ଧ୍ୱଂସର କବଳୁ ।

ଏହାଦ୍ୱାରା ସେ ଭୟଙ୍କରତା ପରିହାର କରି ସ୍ୱକୀୟ ବର୍ଣ୍ଣନାରେ ନିଷ୍ପ୍ରଭ ସ୍ୱଚ୍ଛତା ଆନୟନ କରିଛନ୍ତି । ଅ‌ର୍ଦ୍ଧର ମଧ୍ୟ 'ଦୁର୍ବଳ କାଷ୍ଠଖଣ୍ଡ ମାତ୍ର ରକ୍ଷାକରେ ସେମାନଙ୍କୁ ମୃତ୍ୟୁର କବଳୁ – ଏହା କହିବା ଫଳରେ ବର୍ଣ୍ଣିତ ବିପଦକୁ ସେ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ଆବଦ୍ଧ କରିଦେଇଛନ୍ତି; କାରଣ ଏହା ଯେ ପର୍ଯ୍ୟନ୍ତ ସେମାନଙ୍କୁ ରକ୍ଷା କରୁଛି 'କାଷ୍ଠଖଣ୍ଡ' ଦୃଢ଼ କି ଦୁର୍ବଳ ତାହିଁରେ କିଛି ଯାଏଆସେ ନାହିଁ । ମାତ୍ର ହୋମର ବିପଦର କୌଣସି ନିର୍ଦ୍ଦିଷ୍ଟ ସୀମା ନିର୍ଦ୍ଦେଶ କରନ୍ତି ନାହିଁ; କେବଳ ବହୁଭାବେ ଆସନ୍ନ ବିନାଶର ପ୍ରାନ୍ତରେ ଉପନୀତ ମନୁଷ୍ୟର ଉଜ୍ଜ୍ୱଳ ଚିତ୍ର ଅଙ୍କନ କରନ୍ତି—ପ୍ରତ୍ୟେକଟି ତରଙ୍ଗ ଯେଉଁ-ମାନଙ୍କୁ ତାତ୍କାଳିକ ମୃତ୍ୟୁର ଭୟ ପ୍ରଦର୍ଶନ କରୁଥାଏ । ଏତଦ୍‌ଭିନ୍ନ ସେ ବିପରୀତ ଅର୍ଥବୋଧକ ସମ୍ବନ୍ଧସୂଚକ ଅବ୍ୟୟ ପଦଗୁଡ଼ିକର ଏପରି ପ୍ରବଳ ଓ ସାହସିକ ଏକତ୍ରୀକରଣ ଘଟାଇ ନାବିକମାନଙ୍କ ମନର ବ୍ୟାକୁଳତାକୁ ଯଥାର୍ଥ-ରୂପେ ପ୍ରତିବିମ୍ବିତ କରିବା ପାଇଁ ଶବ୍ଦାବଳୀରେ ଯେଉଁ ସଂରୋଧ ଓ ପରିସ୍ଥିତିର ଅପୂର୍ବ ଭୟଙ୍କରତା ସହ ବାଗ୍‌ବିନ୍ୟାସ ମୁଦ୍ରିତ ହୋଇଛି ଦୃଶ୍ୟର ଦୁଃସହ ଯନ୍ତ୍ରଣାର ଅନୁବର୍ତ୍ତନ କରିବାକୁ ନିଜର ଭାଷାକୁ ବାଧ୍ୟ କରିଥାନ୍ତି । ସେହିପରି ଆର୍କିଲୋକସ୍‌ଙ୍କ ପୋତଭଗ୍ନ ଦୃଶ୍ୟ—ବର୍ଣ୍ଣନା ଓ ଡେମୋସ୍ଥେନସ୍‌ଙ୍କ "ସନ୍ଧ୍ୟା ଯେବେ ହୋଇ ଯାଇଥିଲା" ଇତ୍ୟାଦି ଏଲେସିଆ ଅଧିକାର କରିବାର ସମ୍ବାଦ କିପରି ଆସିଲା ତାହାର ବର୍ଣ୍ଣନା ତଦ୍ରୂପ ଅଟେ । ବିଷୟ ସହ ସମ୍ପର୍କ ନ ଥିବା ଅବାନ୍ତର ପ୍ରସଙ୍ଗକୁ ଏହି ଲେଖକମାନେ ଅତି ରୁଚିପୂର୍ଣ୍ଣଭାବେ ପରିହାର କରି ଦେଉଥିଲେ ଓ ସାରବାନ୍ ତଥ୍ୟଗୁଡ଼ିକୁ ଏକତ୍ର ସମାବେଶ କରିବାବେଳେ କୌଣସି ତୁଚ୍ଛ, ଅନୁଚିତ ଅଥବା ବିରକ୍ତିକର ପ୍ରସଙ୍ଗର ଉତ୍‌ଥାପନ ପ୍ରତି ସତର୍କ ଦୃଷ୍ଟି ରଖୁଥିଲେ । ଏହି ଧରଣର ଦୋଷ ରଚନାର ସାମଗ୍ରିକ ପ୍ରଭାବକୁ କ୍ଷୁର୍ଣ୍ଣ କରେ ତଥା ଉଦାତ୍ତ – ସୌଧର ଦୃଢ଼

ଓ ସମାନ ଗଠନ ସୁଷମାରେ ସ୍ଥାନେ ସ୍ଥାନେ ମରାମତି କରିବା ଓ ଫାଟ ସୃଷ୍ଟି ହେବାର ଆଶଙ୍କା ଦିଏ ।

## (୧୧)

ଉପରେ ଆଲୋଚିତ ଆମ ବିଷୟର ଅଂଶ ସହିତ ଘନିଷ୍ଠ ଭାବେ ସମ୍ପୃକ୍ତ ବିସ୍ତାରଣା ନାମକ ଆଉ ଗୋଟିଏ ବିଶିଷ୍ଟ ଗୁଣ ରହିଛି । ଏହି ଗୁଣ ସେତିକବେଳେ ପ୍ରକାଶ ପାଏ ଯେତେବେଳେ ଜଣେ ଲେଖକ ବା ପକ୍ଷ ସମର୍ଥନକାରୀଙ୍କ ବକ୍ତବ୍ୟର ପ୍ରତ୍ୟେକ ଭାଗରେ ବହୁ ଆନୁକ୍ରମିକ ଆରମ୍ଭ ଓ ବିରାମ ସ୍ଥଳର ସମ୍ଭାବନା ରହିଥାଏ—ସେ ଅବିଚ୍ଛିନ୍ନ ଓ କ୍ରମବର୍ଦ୍ଧମାନ ରୀତିରେ ଗୋଟିକ ପରେ ଗୋଟିଏ ଭାବୋଦ୍ଦୀପକ ଦିଗ ଉପସ୍ଥାପନ କରନ୍ତି । ଏହା ସାଧାରଣ ପ୍ରସଙ୍ଗ ବର୍ଣ୍ଣନାରେ ପ୍ରଯୁକ୍ତ ହେଉ ଅଥବା ବାହୁଲ୍ୟ ବର୍ଣ୍ଣନ ପ୍ରସଙ୍ଗରେ, ବିଷୟର ଯୁକ୍ତିକୁ ପ୍ରବଳ ଭାବେ ଉପସ୍ଥାପିତ କରିବାରେ ହେଉ ଅଥବା କାର୍ଯ ଓ ଆବେଗର ସନ୍ନିବେଶରେ ହେଉ—କାରଣ 'ବିସ୍ତାରଣା' ବହୁଭାବେ ଆତ୍ମପ୍ରକାଶ କରିପାରେ । ସମସ୍ତ କ୍ଷେତ୍ରରେ ବକ୍ତା ସ୍ମରଣ ରଖିବା ଉଚିତ ଯେ ଏଥିରୁ କୌଣସି ଗୋଟିଏ ଉପାୟ ଉଦାତ୍ତର ସହାୟତା ବିନା ସମ୍ପୂର୍ଣ୍ଣ ନୁହେଁ । କରୁଣା ଭାବ ଉଦ୍ରେକ କରିବା କିମ୍ବା କୌଣସି ପ୍ରତିପକ୍ଷର ଯୁକ୍ତିକୁ ଖଣ୍ଡନ କରିବା ଆମର ଉଦ୍ଦେଶ୍ୟ ଥିଲେ ସେ କ୍ଷେତ୍ରରେ ଭିନ୍ନ ହୋଇ-ପାରେ । ବିସ୍ତାରଣାର ଅନ୍ୟ ସମସ୍ତ ପ୍ରୟୋଗ କ୍ଷେତ୍ରରେ ଉଦାତ୍ତ ଉପାଦାନ ବାଦ୍ ଦେଲେ ଶରୀରରୁ ଆତ୍ମାକୁ କାଢ଼ି ନେବା ପରି କଥା ହେବ । ଯେଉଁ ମୁହୂର୍ତ୍ତରେ ବିସ୍ତାରଣା ଉଦାତ୍ତର ଭିତ୍ତିରୁ ବଞ୍ଚିତ ହେଲା ସେଇ ମୁହୂର୍ତ୍ତରେ ସମଗ୍ର ଭାବେ ତାହା ମୃତ, ନିଷ୍କ୍ରିୟ ଓ ନୀରସ ହୋଇ ପଡ଼େ ।

ବର୍ତ୍ତମାନ ମୁଁ ଦେବାକୁ ଯାଉଥିବା ବିଧି ବ୍ୟବସ୍ଥା ଓ ପୂର୍ବୋକ୍ତ ବିଧି ମଧ୍ୟରେ ପାର୍ଥକ୍ୟ ରହିଛି । ସେଥିରେ ମୁଁ ପ୍ରମୁଖ ପରିଚ୍ଛିତି ଗୁଡ଼ିକର

ବର୍ଣ୍ଣନା ଓ ସମନ୍ୱୟ ସାଧନ କଥା କହୁଥିଲି । ସେଥିପାଇଁ ମୋର ପରବର୍ତ୍ତୀ କାର୍ଯ୍ୟ ହେବ ଏଇ ପାର୍ଥକ୍ୟକୁ ସଂକ୍ଷେପରେ ରେଖାଙ୍କିତ କରିବା ଓ ତା' ଦ୍ୱାରା ବିସ୍ତାରଣା ଓ ଉଦାତ୍ତ ତତ୍ତ୍ୱ ମଧ୍ୟରେ କି ସାଧାରଣ ପ୍ରଭେଦ ରହିବ ଦେଖାଇ ଦେବା । ଫଳତଃ ଆମର ସମଗ୍ର ବ୍ୟାଖ୍ୟାନ ସୁସ୍ପଷ୍ଟ ହୋଇ ଉଠିବ ।

## (୧୨)

ମୁଁ ପ୍ରଥମରୁ କହି ରଖୁଛି ଯେ, ବିସ୍ତାରଣା ସମ୍ବନ୍ଧରେ ଅଳଙ୍କାର ଶାସ୍ତ୍ରୀମାନେ ସାଧାରଣତଃ ଯେଉଁ ବ୍ୟାଖ୍ୟା କରନ୍ତି ତହିଁରେ ମୋର ମନୋପୂତ ହେଉନାହିଁ । ସେମାନେ ବିଶ୍ଳେଷଣ କରନ୍ତି ଯେ, ବିସ୍ତାରଣା ହେଉଛି ଭାଷାର ଏପରି ଏକ ରୂପ ଯାହା ବିଷୟକୁ ନିର୍ଦ୍ଦିଷ୍ଟ ଗରିମା ପ୍ରଦାନ କରେ । ତଥାସ୍ତୁ, ମାତ୍ର ଏହି ସଜ୍ଞା ଉଦାତ୍ତ ତତ୍ତ୍ୱ, କାରୁଣ୍ୟ ଓ ଆଲଂକାରିକ ଭାଷା ପ୍ରୟୋଗ କ୍ଷେତ୍ରରେ ମଧ୍ୟ ନିର୍ବିଶେଷରେ ପ୍ରଯୁଜ୍ୟ । କାରଣ ଏ ସମସ୍ତ ଦ୍ୱାରା ଆଲୋଚନା କେତେକ ରୂପେ ଗରିମା ମଣ୍ଡିତ ହୁଏ । ମୋ ମତରେ ପାର୍ଥକ୍ୟ ଏଇଥିରେ ରହିଛି—ଉଦାତ୍ତ ତତ୍ତ୍ୱ ବିଷୟକୁ ସମୁନ୍ନତି ପ୍ରଦାନ କରୁଥିବା ବେଳେ ବିସ୍ତାରଣାରେ ରହିଥାଏ ବିଷୟ—ସମ୍ପ୍ରସାରଣ । ଏଣୁ ଉଦାତ୍ତ ପ୍ରାୟତଃ ଏକମାତ୍ର ଭାବନା-ସୂତ୍ର ମଧ୍ୟରେ ପ୍ରକାଶ ପାଇଥାଏ । ମାତ୍ର ବିସ୍ତାରଣା ନିର୍ଦ୍ଦିଷ୍ଟ ଦୀର୍ଘତା ଓ ବାଗ୍‌ବାହୁଲ୍ୟରେ କେବଳ ଅବସ୍ଥାନ କରିପାରେ । ବିସ୍ତାରଣାର ସବୁଠାରୁ ସାଧାରଣ ବ୍ୟାଖ୍ୟା ହେଲା, କୌଣସି ବିଷୟର ସକଳ ଉପାଦାନଙ୍କ ଭାଗ ଓ ପ୍ରସଙ୍ଗକୁ ଏକତ୍ର ନିହିତ କରିବା । ଏଠାରେ ପୁନଃ ପୁନଃ ଦୃଢ଼ କଥନ ଦ୍ୱାରା ଯୁକ୍ତି ଉପରେ ଗୁରୁତ୍ୱ ଆରୋପ କରଯାଏ । ଆଉ ଏଇଠାରେ ଏହା ପ୍ରମାଣଠାରୁ ଭିନ୍ନ ଯେ ପ୍ରମାଣରେ ବିଷୟ ତର୍କଶାସ୍ତ୍ରସମ୍ମତ ପ୍ରତିପାଦନ ହେବାବେଳେ…… …… …… ……

ପ୍ଲେଟୋ ସମୁଦ୍ର ଭଳି ସ୍ୱଭାବ-ସମ୍ପଦକୁ ବହୁଳ ଓ ପ୍ରସାରଣଶୀଳ ବନ୍ୟା ରୂପରେ ଅଜାଡ଼ି ଦଅନ୍ତି । ଏଣୁ ବାଗ୍ମୀ ଦେମୋସ୍ଥେନେସ୍‌ଙ୍କର ଶୈଳୀ—ଯାହାଙ୍କର ଆବେଗ—ଉଦ୍‌ବୋଧନ କ୍ଷମତା ଅସାଧାରଣ—ଏହି ହେତୁ ପ୍ରଚଣ୍ଡ ଓ ଜ୍ୱଳନ୍ତ ଆବେଗସମ୍ପନ୍ନ । ଅନ୍ୟ ପକ୍ଷରେ ପ୍ଲେଟୋ – ଗୁରୁତା ଓ ପ୍ରଶାନ୍ତ ବୈଭବରେ ଯାହାଙ୍କର ଶକ୍ତି ନିହିତ – ଯଦିଓ ଉତ୍ସାହବର୍ଦ୍ଧକ ନୁହନ୍ତି ତଥାପି ଦେମୋସ୍ଥେନେସ୍‌ଙ୍କ ବଜ୍ରନିର୍ଘୋଷରେ ସ୍ପର୍ଦ୍ଧା କରି ନପାରନ୍ତି । ଅଉ, ଲାଟିନ ସାହିତ୍ୟ ସମ୍ପର୍କରେ ମତବ୍ୟକ୍ତ କରିବା ପାଇଁ ଗ୍ରୀସ୍‌ର ଲୋକଙ୍କୁ ଯଦି ଅନୁମତି ଦିଆଯାଏ, ମୋର ମନେହୁଏ, ସିସେରୋଙ୍କ ଗୌରବରେ ତାଙ୍କର ଗ୍ରୀସୀୟ ପ୍ରତିଦ୍ୱନ୍ଦ୍ୱୀ ଦେମୋସ୍ଥେନେସ୍‌ଙ୍କ ତୁଳନାରେ ତଦ୍ରୂପ ପାର୍ଥକ୍ୟ ଦୃଷ୍ଟି-ଗୋଚର ହୋଇପାରେ । ଦେମୋସ୍ଥେନେସ୍‌ଙ୍କ ଉଦାତ୍ତ-ତତ୍ତ୍ୱ ସାଧାରଣତଃ ଅପ୍ରତ୍ୟାଶିତ ଓ ରୂଢ଼ ସିସେରୋଙ୍କର ମଧ୍ୟ ଠିକ୍ ସେହିଭଳି ବିଷ୍କୃତ । ଦେମୋସ୍ଥେନେସ୍‌ଙ୍କୁ ଆମେ ଚକ୍ରବାତ ବା ଅଶନି ସହିତ ତୁଳନା କରିପାରୁ···· କାରଣ ସେ ପ୍ରଚଣ୍ଡ, କ୍ଷିପ୍ର, ବଳବାନ୍ ଓ ଭୟଙ୍କର···ସେ ଅଗ୍ନିଭଳି ଯାହା କିଛି ସମ୍ମୁଖରେ ଥାଏ ସବୁ ପୋଡ଼ି ଜାଳି ଉଡ଼ାଇ ନିଅନ୍ତି ।

ସିସେରୋ ହେଲେ ସୁଦୂରବିସ୍ତାରୀ ଦାବାଗ୍ନି ସଦୃଶ ;

ଯାହାର ଲେଲିହାନ ଶିଖା ସ୍ଫୁଟବିଭାଗକୁ

ଗ୍ରାସ କରି ସମସ୍ତ ଭସ୍ମୀଭୂତ କରିଦିଏ, ଯାହାର ଜ୍ୱାଳା ମାଳା ବର୍ତ୍ତିକ ଓ ଅନିର୍ବାଣ····ଯାହା କ୍ରମାନ୍ୱୟରେ ଭିନ୍ନ ଭିନ୍ନ ସ୍ଥାନରେ ଜ୍ୱଳି ଉଠେ । ତଥା ନିଜର ଇନ୍ଧନ ନିମନ୍ତେ କେବେ ଏଠାରେ କେବେ ଅନ୍ୟତ୍ର ଦେଖା ଦେଇଥାଏ । ଯାହାହେଉ, ଏ ସବୁ କଥା ମୁଁ ତୁମର ସମର୍ଥ ବିଚାର ବୁଦ୍ଧି ଉପରେ ନ୍ୟସ୍ତ କରୁଛି ।

—ଏହାପରେ ଆମେ ଆଲୋଚନା କରିବା ଦେମୋସ୍ଥେନେସ୍‌ଙ୍କ ଉଚ୍ଚଗୁଣ-ଯୁକ୍ତ ଔଦାତ୍ତ୍ୟର ଯଥାର୍ଥତା ସେହି କ୍ଷେତ୍ରରେ ଅନୁଭୂତ ହୁଏ ଯେଉଁଠି ବାହୁଲ୍ୟ ବର୍ଣ୍ଣନ ଅଥବା ଶବ୍ଦ ସମ୍ବେଗ ଉଦ୍ଦୀପ୍ତ କରିବା ଏବଂ ସାଧାରଣତଃ ଆମେ

ଯେତେବେଳେ ଶ୍ରୋତୃବର୍ଗଙ୍କୁ ମୁଗ୍ଧ କରିବା ଅଭିପ୍ରାୟ ରଖୁଁ । ଅନ୍ୟ ପକ୍ଷରେ, ଆମ୍ଭେ ଯେତେବେଳେ ସେମାନଙ୍କୁ ଶବ୍ଦର ବନ୍ୟାରେ ଭସାଇ ନେବାକୁ ଚାହୁଁ ସେତେବେଳେ ଆମକୁ ବାଗ୍‌ବହୁଳ ଶୈଳୀ ପ୍ରୟୋଗ କରିବାକୁ ପଡ଼ିବ । ଉଦାହରଣ ସ୍ୱରୂପ, ସାଧାରଣ ପ୍ରସଙ୍ଗ ବର୍ଣ୍ଣନାରେ, ଅଧିକାଂଶ କ୍ଷେତ୍ରରେ ଦୀର୍ଘ ବିବରଣୀ ପ୍ରଦାନ କ୍ଷେତ୍ରରେ, ଏବଂ ମୂଳ ବିଷୟ ପରିବର୍ତ୍ତେ ଅବାନ୍ତର ପ୍ରସଙ୍ଗର ଉତ୍ଥାପନ ନିମନ୍ତେ—ସବୁ ପ୍ରକାର ବର୍ଣ୍ଣନାତ୍ମକ ଓ ଉଦ୍‌ଘୋଷଣାତ୍ମକ ସ୍ଥଳରେ, ଇତିହାସ ବା ପ୍ରାକୃତିକ ବିଜ୍ଞାନ ତଥା ବହୁବିଧ ଅନ୍ୟ ପ୍ରସଙ୍ଗରେ ଏହି ଶୈଳୀ ପ୍ରଶସ୍ତ ଅଟେ ।

## ୧୩

ପୁନଶ୍ଚ ପ୍ଲେଟୋଙ୍କ ନିକଟକୁ ଫେରିଆସିବା । ତୁମେ ପଢ଼ିଥିବ, ପ୍ଲେଟୋଙ୍କ 'ରିପବ୍ଲିକ୍' ଗ୍ରନ୍ଥର ନିମ୍ନୋକ୍ତ ବିଶିଷ୍ଟ ଅଂଶରୁ ଅବଗତ ହେବ ପ୍ରବର୍ତ୍ତନାତ୍ମକ ବାଣୀର ମୃଦୁ ଓ ନିଃଶବ୍ଦ ପ୍ରବାହ ସହ କେତେ ଭବ୍ୟ ହୋଇ ପାରନ୍ତି....''ସେଥିପାଇଁ, ବିବେକ-ଜ୍ଞାନ ଓ ସାଧୁତା ବିରହିତ ବ୍ୟକ୍ତିଗଣ, ଯେଉଁମାନଙ୍କ ଜୀବନ ପାନଭୋଜନ ଓ ତତ୍ତୁଲ୍ୟ ଆନନ୍ଦ ଉତ୍ସବ ମଧ୍ୟରେ ବିତି ଯାଇଛି, ନିମ୍ନଗାମୀ ହେବା ସେମାନଙ୍କ ପକ୍ଷରେ ଅତି ସ୍ୱାଭାବିକ । ଆଉ ଯାବଜ୍ଜୀବନ ସେଇ ନିମ୍ନ ପ୍ରଦେଶରେହିଁ ଉଦ୍ଦେଶ୍ୟହୀନ ଭାବେ ସେମାନେ ବିଚରଣ କରୁଥାନ୍ତି ; ମାତ୍ର ସେମାନେ କେବେହେଲେ ଊର୍ଦ୍ଧ୍ୱକୁ ଚାହିଁ ନଥାନ୍ତି କି ଊର୍ଦ୍ଧ୍ୱସ୍ଥ ସତ୍ୟ-ଜଗତ ପ୍ରତି ଆକୃଷ୍ଟ ହୋଇ ନଥାନ୍ତି କିମ୍ବା କେବେହେଲେ ସ୍ଥାୟୀ ଓ ଅବିମିଶ୍ର ଆନନ୍ଦ ଉପଭୋଗ କରି ପାରନ୍ତି ନାହିଁ ; ମାତ୍ର ପଶୁ ସଦୃଶ ସର୍ବଦା ଦୃଷ୍ଟି ସେମାନଙ୍କର ନିମ୍ନାଭିମୁଖୀ ଓ ମସ୍ତକ ଚରଣ-ଭୂମିରେ ନିବଦ୍ଧ । ସେମାନେ ଉଦର ପୂର୍ଣ୍ଣ କରି ଖାଦ୍ୟ ଖାଆନ୍ତି ଓ ଭୋଗବାସନାର ତୃପ୍ତି ସାଧନ କରନ୍ତି ତଥା ସେଇ ସମସ୍ତ ବସ୍ତୁପାଇଁ ସର୍ବଦା ଅଧିକରୁ ଅଧିକ ଲାଳସାଗ୍ରସ୍ତ ହୋଇ ପରସ୍ପରକୁ ଲୌହ ଶୃଙ୍ଗ ଓ କ୍ଷୁର ଦ୍ୱାରା ଭୁଷି ଓ ଗୋଇଠା ମାରି

ଲାଗନ୍ତି ଆଉ ଅତୃପ୍ତ ବାସନାଗ୍ରସ୍ତ ସେହି ବ୍ୟକ୍ତିମାନେ ଏକ ଅପରକୁ ହତ୍ୟା କରନ୍ତି ।

ଆମେ ଯଦି ଏହି ଲେଖକଙ୍କ ଉଦାହରଣ ପ୍ରତି ଦୃଷ୍ଟି ଦେଉ ତେବେ ଜାଣି ପାରିବୁ ଯେ ଉଦାତ୍ତର ତୁଙ୍ଗ ଚୂଡ଼ାରେ ଉପନୀତ ହେବା ପାଇଁ ଆମେ ଯେଉଁଗୁଡ଼ିଏ ମାର୍ଗ ଉଲ୍ଲେଖ କରିଛୁ ତଦତିରିକ୍ତ ଅନ୍ୟ ଏକ ମାର୍ଗ ରହିଛି । କେଉଁ ମାର୍ଗ ମୋର ଅଭିପ୍ରେତ ? ଅତୀତର ମହାକବି ଓ ଗଦ୍ୟକାରମାନଙ୍କର ସ୍ପର୍ଦ୍ଧାପୂର୍ଣ୍ଣ ଅନୁକରଣ । ପ୍ରିୟ ବନ୍ଧୁ, ଏ ଦିଗରେ ଆମର ଦୃଷ୍ଟି ସତତ ଏକନିଷ୍ଠ ଭାବେ ସ୍ଥିର ରହୁ । ବହୁ ବ୍ୟକ୍ତି ଅନ୍ୟର ଆତ୍ମାରୁ ସ୍ୱର୍ଗୀୟ ପ୍ରେରଣା ଲାଭ କରନ୍ତି—ଠିକ୍ ଯେପରି ଆମେ ଶୁଣିଥିବା ପିଥିଆର ପୂଜାରିଣୀ କାହାଣୀରେ—ସେ ଯେତେବେଳେ ବେଦିକା ଉପରେ ଉପବେଶନ କରିବାକୁ ଯାଏ, ଶୁଣାଯାଏ, ସେଠାରେ ଭୂମିରେ ଥିବା ଛିଦ୍ର ପଥରେ ଊର୍ଦ୍ଧ୍ୱକୁ ସ୍ୱର୍ଗୀୟ ବାଷ୍ପର ନିର୍ଗମନ ଘଟି ସେଇ ସ୍ୱରୁ ତାଙ୍କ ଭିତରେ ସହସା ଏକ ଐଶ୍ୱରିକ ଭବିଷ୍ୟଦ୍ ବାଣୀ କରିବା ଶକ୍ତି ସଞ୍ଚାର ହୁଏ ଓ ସେ ପ୍ରେରଣାତ୍ମକ ଦୈବବାଣୀ ଉଚ୍ଚାରଣ କରିବାକୁ ଲାଗନ୍ତି । ସେହିଭଳି ପୂର୍ବକାଳର ମହାନ୍ ଲେଖକମାନଙ୍କ ମହତ୍ତ୍ୱ ପ୍ରତିଭାରୁ ସେମାନଙ୍କୁ ଅନୁକରଣ କରୁଥିବା ପରବର୍ତ୍ତୀ କାଳର ଲେଖକମାନଙ୍କ ଆତ୍ମାରେ ପ୍ରେରଣାର ଉତ୍ସରୁ ଉତ୍ସାରିତ ହେବାଭଳି ଏକ ପ୍ରବାହ ପ୍ରବାହିତ ହୋଇ ଆସେ । ଆଉ ସେଇ ବ୍ୟକ୍ତିମାନଙ୍କର ସ୍ୱଭାବ ପ୍ରଭାବ ଗ୍ରହଣରେ ଅସମର୍ଥ ଭଳି ପ୍ରତୀତ ହେଉଥିଲେ ମଧ୍ୟ ଅନ୍ୟର ମହାନ୍ ଉତ୍ସାହରେ ଅନୁପ୍ରାଣିତ ହୋଇ ଉଠନ୍ତି । ଏହିପରି ଅସଂଖ୍ୟ ଲବ୍ଧ—ପ୍ରତିଷ୍ଠ ଶିଷ୍ୟ ପରଂପରା ସହିତ ହୋମରଙ୍କ ନାମ ଜଡ଼ିତ—କେବଳ ହୋରୋଦୋତସ୍ ନୁହନ୍ତି, ତାଙ୍କ ପୂର୍ବରୁ ଷ୍ଟେସିଖୋରସ୍ ଓ ମହାନ୍ ଆର୍କିଲୋଖସ୍ ଓ ସର୍ବୋପରି ପ୍ଲେଟୋ—ଯେ ହୋମରଙ୍କ ପ୍ରତିଭାର ମହା—ନିର୍ଝରରୁ ସ୍ୱୟଂ ଅଗଣିତ ଜଳଧାରା ଲାଭ କରିଛନ୍ତି । ଯଦି ଆମୋନିଉସ୍ ଓ ତାଙ୍କ ସମ୍ପ୍ରଦାୟ ଏ ବିଷୟରେ ବିଭାଗୀକରଣ ତଥା ବିବିଧ ଉଦାହରଣଗୁଡ଼ିକୁ ଏକତ୍ର କରି ଦେଇ ନଥାନ୍ତେ ତେବେ ସମ୍ଭବତଃ ଏ ଦିଗଟିକୁ ବିଶ୍ଳେଷଣ କରିବା ଆବଶ୍ୟକ ହୋଇଥାନ୍ତା । ବର୍ତ୍ତମାନ ମୁଁ

ଯେଉଁ ବିଷୟରେ କହୁଛି ତାହା ସାହିତ୍ୟିକ ଚୌର୍ଯ୍ୟବୃତ୍ତି ନୁହେଁ ; ମାତ୍ର ସୁନ୍ଦର ଆକୃତି ବା ପ୍ରତିମୂର୍ତ୍ତି ବା କୌଶଳପୂର୍ଣ୍ଣ କଳାକୃତିରୁ ଅନୁକରଣ କରୁଥିବା ଧାରା ସଦୃଶ । ମୋ ମତରେ ପ୍ଲେଟୋ ଯଦି ହୋମରଙ୍କ ସମକକ୍ଷ ହେବାପାଇଁ ମନ-ପ୍ରାଣ ସହ ପ୍ରତିଦ୍ୱନ୍ଦ୍ୱିତାରେ ଅବତୀର୍ଣ୍ଣ ହୋଇ ନଥାନ୍ତେ, ଯଦି ସେ ଜଣେ ତରୁଣ ଯୋଦ୍ଧା ସଦୃଶ ଜଣେ ପ୍ରବୀଣ ଯୋଦ୍ଧା ବିରୁଦ୍ଧରେ ସଂଗ୍ରାମ ଭୂମିରେ ପ୍ରବେଶ କରି ନଥାନ୍ତେ ତେବେ ତାଙ୍କର ଦାର୍ଶନିକ ସିଦ୍ଧାନ୍ତ ସମୂହରେ ଏତେ ବହୁଳ ପରିମାଣରେ ଚିତ୍ରକଳ୍ପର ମନୋରମ ପୁଷ୍ପ ପ୍ରସ୍ଫୁଟିତ ହୋଇ ନଥାନ୍ତା। କିମ୍ବା ବହୁ ସ୍ଥଳରେ ସେ ଭାଷା ଓ ପ୍ରସଙ୍ଗରେ କାବ୍ୟ-କୋଠିକୁ ଉନ୍ନୀତ ହୋଇ ପାରି ନଥାନ୍ତେ । ଏହା ହୋଇପାରେ, ସେ ଏପରି ଏକ ଦ୍ୱନ୍ଦ୍ୱ ଯୁଦ୍ଧରେ ଅବତୀର୍ଣ୍ଣ ହୋଇ ଅତ୍ୟଧିକ ଉତ୍ସାହ ଓ ସାହସିକତା ପ୍ରଦର୍ଶନ କରିଛନ୍ତି ; ମାତ୍ର ତା’ସତ୍ତ୍ୱେ ସେ ଯେ ଲଭାନ୍ୱିତ ହୋଇ ନାହାନ୍ତି, ତାହା ନୁହେଁ । ହେସିଅଡ୍ କହିଛନ୍ତି, “ଏତାଦୃଶ ବିବାଦ ମାନବମାନଙ୍କ ନିମନ୍ତେ ଶୁଭଙ୍କର ।” ଆଉ ଏ କ୍ଷେତ୍ର ଅପେକ୍ଷା ଆମେ ଆଉ କେଉଁଠି ପାଇବା ଏପରି ଗୌରବପ୍ରଦ ରଙ୍ଗଭୂମି ଓ ମହନୀୟ ମୁକୁଟ—ଯେଉଁଠି ଆମର ପୂର୍ବସୂରୀମାନଙ୍କ ଦ୍ୱାରା ପରାସ୍ତ ହେବା ମଧ୍ୟ ଅଗୌରବର ବିଷୟ ନୁହେଁ

## (୧୪)

ଆମେ ଯେତେବେଳେ ଏପରି କୌଣସି ବିଷୟ ପ୍ରତିପାଦନରେ ନିଜେ ପ୍ରଯତ୍ନଶୀଳ – ଆଉ ସେ ବିଷୟ ନିମନ୍ତେ ଉନ୍ନତ ଭାବ ଓ ଗରିମାମୟ ଶୈଳୀ ପ୍ରୟୋଜନ, ସେ ଦୃଷ୍ଟିରୁ ଏହା ଆମ ପକ୍ଷରେ ଶ୍ରେୟସ୍କର ଯେ, ଆମେ ନିଜେ ଏହା କଳ୍ପନା କରିବା ଉଚିତ୍, ହୋମର ଏ ବିଷୟକୁ କେଉଁ ଭାବେ ଅଭିବ୍ୟକ୍ତି ପ୍ରଦାନ କରିଥାନ୍ତେ କିମ୍ବା ପ୍ଲେଟୋ, ଡେମୋସ୍ଥେନେସ୍ ଅଥବା ଐତିହାସିକ ଥୁସିଡିଡେସ୍ ଏହାକୁ କେଉଁ ରୀତିରେ ଔଦାର୍ଯ୍ୟ ମଣ୍ଡିତ କରିଥାନ୍ତେ । କାରଣ

ଏତାଦୃଶ ଉଚ୍ଚ ଆଦର୍ଶ ପ୍ରତି ସ୍ପର୍ଦ୍ଧାପୂର୍ଣ୍ଣ ଦୃଷ୍ଟି ନିବଦ୍ଧ କଲେ ସେହି ମହା-ପ୍ରତିଭା-ଧରମାନେ ବର୍ତ୍ତିକାଧର ସଦୃଶ ଆମକୁ ପଥ ଦେଖାଇବେ ଓ ଆମେ କଳ୍ପନା କରିଥିବା ଆକାରର ପୂର୍ଣ୍ଣତା ପ୍ରତି ଆମର ଆତ୍ମାକୁ ଉନ୍ନୀତ କରାଇବେ । ଏହାଠାରୁ ଆହୁରି ଅଧିକ ଉପଯୁକ୍ତ ହେବ ଯଦି ଆମେ ଏହି ଭାବନାକୁ ହୃଦୟଙ୍ଗମ କରିବାକୁ ଚେଷ୍ଟିତ ହେବା – "ଯଦି ହୋମର କିମ୍ବା ଡିମୋ-ସ୍ଥେନେସ୍ ଏହି ସ୍ଥାନରେ ସ୍ୱଶରୀରରେ ବିଦ୍ୟମାନ ଥା'ନ୍ତେ, ମୋର ରଚନା ଶ୍ରବଣ କରି ତାହାକୁ କେଉଁ ଭାବେ ଗ୍ରହଣ କରନ୍ତେ ଅଥବା ତା'ହା'ର ସେମାନେ କେତେ ପ୍ରଭାବିତ ହୋଇଥାନ୍ତେ ?" କାରଣ ନିଜ ରଚନାର ଏପରି ବିଚାରକମଣ୍ଡଳୀ ଓ ଶ୍ରୋତୃମଣ୍ଡଳୀ କଳ୍ପନା କରିବା ତଥା ସେହି ମହାରଥି-ମାନଙ୍କ ସମକ୍ଷରେ ନିଜ ରଚନାର ଏକ ବିବରଣୀ ସମାଲୋଚନା ନିମନ୍ତେ ବାଢ଼ିବା ଅପେକ୍ଷା ଲେଖକର ଉଦ୍ୟମ ପକ୍ଷରେ ଅନ୍ୟ କେଉଁ ଉଚ୍ଚତର ଉଦ୍ଦୀପନା ଅଛି ? ତଥାପି ଏ ଭାବନା ଅଧିକ ପ୍ରେରଣାଦାୟକ ହେବ – ମୋର ଉକ୍ତ ରଚନାବଳୀ ମହାକାଳର ପ୍ରତ୍ୟେକ ଯୁଗରେ କି ଭାବେ ପଠିତ ଓ ଗୃହୀତ ହେବ ?" ଯଦି ଏହା କୌଣସି ଲେଖକ ମନରେ ଭୟ ସଞ୍ଚାର କରେ ଯେ ସେ ତାହାର ସମକାଳୀନମାନଙ୍କ ନିକଟରେ ସୁବୋଧ ହୋଇ ପାରୁନାହିଁ ତେବେ ତାଙ୍କର ରଚନା ଅମାର୍ଜିତ, ବିକଳାଙ୍ଗ ଓ ଅକାଳପ୍ରସୂତ ହେବାକୁ ବାଧ୍ୟ । ଆଉ ଯାହା ଭାବୀ ଯୁଗର ପ୍ରଶଂସା ଲାଭ କରିବା ପାଇଁ ଆବଶ୍ୟକ, ତନ୍ମଧ୍ୟରେ ସେହି ସୁସିଦ୍ଧ ପରିପୂର୍ଣ୍ଣତାର ବିରହ ଘଟିବ ।

# (୧୪)

କଳ୍ପନା ଚିତ୍ରମାନଙ୍କର ଯଥାର୍ଥ ପ୍ରୟୋଗ ଉପରେ ଶୈଳୀର ଗରିମା, ସମୁନ୍ନତି ଓ ଶକ୍ତି ମୁଖ୍ୟତଃ ନିର୍ଭର କରେ । ଏହାକୁ ସାଧାରଣତଃ ମାନସୀ-ପ୍ରତିମା ଅର୍ଥରେ ଗ୍ରହଣ କରାଯାଇଥାଏ । ଚିତ୍ର-କଳ୍ପନା ଆଖ୍ୟା ସାଧାରଣତଃ

ପ୍ରତ୍ୟେକଟି ଭାବନାକୁ ଦିଆ ଯାଇଥାଏ ଯାହା ଯେ କୌଣସି ରୂପେ ଉପସ୍ଥାପିତ ହେଲେ ମଧ୍ୟ ବାଣୀରେ ପରିସ୍ଫୁରିତ ହୋଇଥାଏ । ମାତ୍ର ଏହି ସଂଜ୍ଞା ବର୍ତ୍ତମାନ ସାଧାରଣତଃ ସେହି ସ୍ଥଳରେ ପ୍ରୟୋଗ କରାଯାଏ ଯେଉଁଠି ବକ୍ତା ନିଜ ଅନୁଭୂତିର ତନ୍ମୟ ଓ ଉତ୍ତେଜିତ ଅବସ୍ଥା ହେତୁ ଭାବେ ଯେ ସେ ଯାହା ବର୍ଣ୍ଣନା କରୁଛି ତାହାକୁ ସାକ୍ଷାତ୍ ଦର୍ଶନ କରୁଛି ଓ ନିଜର ଶ୍ରୋତାମାନଙ୍କ-ଠାରେ ମଧ୍ୟ ତତ୍ତୁଲ୍ୟ ବିଭ୍ରମ ଜାତ କରୁଛି । ଭୂମେ ଏ ବିଷୟରେ ସୁବିଦିତ ଯେ କବି ଓ ବକ୍ତା ଉଭୟେ କଳ୍ପନା-ଶକ୍ତି ପ୍ରୟୋଗ କରନ୍ତି ; ମାତ୍ର ସେମାନଙ୍କର ଲକ୍ଷ୍ୟ ଭିନ୍ନ । କାବ୍ୟ-ବିମ୍ବର ଉଦ୍ଦେଶ୍ୟ ହେଲା, ଚମତ୍କୃତ କରିବା ; ଉଦ୍‌ବୋଧନମୂଳକ ବିମ୍ବର ଉଦ୍ଦେଶ୍ୟ ସାକ୍ଷାତ୍ ବର୍ଣ୍ଣନା । ଯାହାହେଉ, ସମ୍ବେଗର ଉଦ୍‌ବୋଧନ ଉଭୟଙ୍କର ଧ୍ୟେୟ ।

ନିବେଦନ ଘେନ ମୋର ମାତଃ,
ରକ୍ତମୁଖା ଭୁଜଙ୍ଗକେଶିନୀ ସେହି କୁମାରୀମାନଙ୍କୁ
ଆକ୍ରମଣ କରିବାକୁ ମୋରେ ଲଗାନା ଗୋ ଆଉ
ଦେଖ, ଦେଖ, ଆସିଲେ ସେମାନେ,
ଏଠାରେ ପହଞ୍ଚି ଗଲେଣି, ସେମାନେ ମୋ ଉପରକୁ ଲମ୍ଫ ଦେଲେଣି !

ଆଉ ପୁଣି

ହାୟ ହାୟ, ହତ୍ୟା ସେ କରିବେ ମୋରେ !
କାହିଁ ମୁହିଁ ଯିବି ଗୋ ପଳାଇ ?

କବି ଏହିପରି ବର୍ଣ୍ଣନା କଲାବେଳେ ସ୍ୱୟଂ ଏରିନିମାନଙ୍କୁ ନିଜ ଆଖିରେ ଦେଖିଛନ୍ତି ଓ ନିଜର ପାଠକମାନଙ୍କୁ ମଧ୍ୟ ଦେଖିବା ନିମନ୍ତେ ସମ୍ପୂର୍ଣ୍ଣ ବାଧ୍ୟ କରୁଛନ୍ତି । ଇଉରିପାଇଡିସ୍ ଉନ୍ମତ୍ତତା ଓ ପ୍ରଣୟ ଭଳି ଆବେଗ ଗୁଡ଼ିକୁ କରୁଣାତ୍ମକ ଅଭିବ୍ୟକ୍ତି ପ୍ରଦାନ କରିବାରେ ସ୍ୱକୀୟ ସାଧନାର ଚରମ ଆନନ୍ଦ

ଲାଭ କରୁଥିଲେ ଏବଂ ଏଥିରେ ସେ ସ୍ୱ ସିଦ୍ଧିର ପ୍ରକୃତ ପ୍ରମାଣ ଦେଇ ପାରିଛନ୍ତି ଯାହା ମୁଁ ଅନ୍ୟ କୁତ୍ରାପି ପ୍ରଦର୍ଶିତ ହୋଇଥିବା ମନେକରେ ନାହିଁ । ତଥାପି, କଳ୍ପନାର ଅନ୍ୟ କ୍ଷେତ୍ରମାନଙ୍କରେ ସାହସ ସହକାରେ ପ୍ରବେଶ କରିବା ନିମନ୍ତେ ସେ କୌଣସି ରୂପେ ପଶ୍ଚାତ୍‌ପଦ ନ ଥିଲେ । ତାଙ୍କର ପ୍ରତିଭା ସେତେ ଉଚ୍ଚ-କୋଟିର ନ ଥିଲେ ମଧ୍ୟ ସାଧ୍ୟ ସାଧନା ବଳରେ ସେ ନିଜକୁ ବହୁ ସମୟରେ ବିୟୋଗାନ୍ତକ ଭଙ୍ଗିମାରେ ଉପନୀତ କରାଇ ପାରୁଥିଲେ । ଭବ୍ୟତର ମୁହୂର୍ତ୍ତରେ ସେ ଆମକୁ ସାଧାରଣତଃ ହୋମରଙ୍କ ସିଂହ ବର୍ଣ୍ଣନା ସ୍ମରଣ କରାଇ ଦିଅନ୍ତି —

ପୁଚ୍ଛ ଦ୍ୱାରା ସେ ତାହାର ବାମ ଓ ଦକ୍ଷିଣପାର୍ଶ୍ୱେ
କୋରଡ଼ା ସମାନ ପ୍ରହାର ଚାଳୁଛି
ଆଉ ତାହାକୁ ସଂଗ୍ରାମ ନିମନ୍ତେ ଦେଉଛି ତାଡ଼ନା ।

ଉଦାହରଣ ସ୍ୱରୂପ, ସ୍ୱପୁତ୍ର ହସ୍ତରେ ରଶ୍ମି ଧରାଇ ଦେଇ ହେକ୍ଟର୍ ଯେଉଁ ସ୍ଥାନରେ କହୁଛନ୍ତି, ସେଇ ଛତ୍ରଟି —

ଚଳାଇନେ, ମାତ୍ର ନିବିଆର ଜ୍ୱଳନ୍ତ ପଥ କର ପରିହାର,
ଉତ୍ତପ୍ତ ଖରବାୟୁ ତୋର ଅକ୍ଷ ଦଣ୍ଡ ଦେବ ଖଣ୍ଡ ଖଣ୍ଡ କରି ।
ସପ୍ତ ପ୍ଲେଇଅଡଙ୍କ ଦଳେ ରଖ ତୋର ଅବଚଳ ଗତି ।

ଆଉ ତା'ପରେ

ଏତେକ କହନ୍ତେ, ନିର୍ଭୀକ ପୁତ୍ର ତା'ର ଝିଙ୍କି ନେଲା ରଶ୍ମି,
ପକ୍ଷଧର ଅଶ୍ୱପରେ ତତ୍ପରେ କୋରଡ଼ା ପ୍ରହାର ;
ମହାଶୂନ୍ୟ ଓ କିବରସମ ବାୟୁମଣ୍ଡଳରେ ସେମାନେ ଉଡ଼ିଗଲେ ।
ଅନ୍ୟ ଏକ ଅଶ୍ୱପୃଷ୍ଠେ ଆରୂଢ଼ ଜନକ ତାହାର,

ସତର୍କବାଣୀ ଶୁଣାଇ ସୂସ୍ୱରେ ଉଦ୍ଦେଶେ— ଚଳାଉରେ ସେଠାକୁ
ଫେର-ଫେର, ଏଇ ପଥେ ତୋର ରଥ—ଏଇ ଅଡ଼େ ।”

ଆମେ କହିବା ନାହିଁ କି କବିଙ୍କ ଆତ୍ମା ତାଙ୍କର ନାୟକ ସହିତ ରଥାରୋହଣ କରି ପକ୍ଷଧର ଅଶ୍ୱମାନଙ୍କର ବଦେଶସଙ୍କୁଳ ବ୍ୟୋମବହାରରେ ସହଯାତ୍ରୀ ହୋଇଛି ? ତା ହୋଇ ନ ଥିଲେ— ସେଇ ଦବ୍ୟ ପଥରେ ସେମାନଙ୍କ ସଙ୍ଗରେ ତାଙ୍କର କଳ୍ପନା ପକ୍ଷ ବସ୍ତାର କରି ଉଚ୍ଚାକାଶରେ ଉଡ଼ି ନ ଥିଲେ ସେ କଦାପି ଏପରି ଜୀବନ୍ତ ଚିତ୍ର କଳ୍ପନା କରିପାରି ନ ଥାନ୍ତେ । ତାଙ୍କର ‘କସନ୍ଦ୍ରା’ର ଆରମ୍ଭ ଅଂଶ ମଧ୍ୟ ଠିକ୍ ସେହିପରି,

ଆହେ ଅଶ୍ୱପ୍ରେମୀ ଥ୍ରେସ୍‌ବାସୀଗଣ !

ଏସ୍‌କିଲସ୍ ସ୍ୱ ବୀରତ୍ୱପୂର୍ଣ୍ଣ ବଷୟବସ୍ତୁର ଉପଯୁକ୍ତ ଓଜସ୍ୱୀ-କଳ୍ପନାଚିତ୍ର ସୃଷ୍ଟି କରିଛନ୍ତି, ଯଥା, ତାଙ୍କର ‘ଥେବସ୍ ବରୁଦ୍ଧରେ ସପ୍ତଜଣ’ ଗ୍ରନ୍ଥରେ ସେ ଯେଉଁଠି କହୁଛନ୍ତି :—

ସପ୍ତ ମହାବୀର, ଆଉ ଅସୀମ ସାହସୀ ସେନାନାୟକଗଣ,
ଲୌହାଚ୍ଛାଦତ ଫଳକରେ ବଧ କରି ବୃଷ ଏକ
ଆଉ ସେହି ରକ୍ତେ ଭିଜାଇଣ ହସ୍ତ ସର୍ବେ କଲେ ଆବାହନ
ଆରେସ, ଏନାଓ ଆଉ ମୃତ୍ୟୁ-ବକରାଳ ଦେବତାଙ୍କୁ
ପ୍ରତିଜ୍ଞାର ସାକ୍ଷୀରୂପେ ।

ଏଥିରେ ବର୍ଣ୍ଣନା କରିଛନ୍ତି ସେମାନେ କପରି ଏକତାବଦ୍ଧ ହୋଇ ମୃତ୍ୟୁକୁ ଭୟ ନ କରି ଶପଥ ନେଇଛନ୍ତି । ତା’ ସତ୍ତ୍ୱେ ବେଳେବେଳେ ତାଙ୍କର ଭାବନା ଆକୃତିବହୀନ, ଆଉ ସେଥିପାଇଁ ଅସମ-ଗଠିତ ଓ ବନ୍ଧୁର । ଏଥିପ୍ରତି ଦୃଷ୍ଟି ନ ଦେଇ, ସ୍ପର୍ଦ୍ଧାଭରେ ଅନ୍ଧହୋଇ ୟୁରିପିଡେସ୍ ବେଳେବେଳେ ‘ଏବଂବଧ ଦୋଷଭାଗୀ ହୋଇ ପଡ଼ିଥାନ୍ତି । ଏକିଲସ୍ ଡାଇଓନିସସ୍‌ଙ୍କ ଆବର୍ଭାବ ସମ୍ବନ୍ଧରେ

ନିକୁର୍ଦ୍ଦସର ବଳପ୍ରାସାଦକୁ ଅଭିଭୂତ ହେବାଭଳି ଭାଷାର ବିଚିତ୍ର ଉଚ୍ଛୃଙ୍ଖଳତା ଫୁଟାଇ ଚିତ୍ରଣ କରିଛନ୍ତି

ସଭାଗୃହମାନ ଉଲ୍ଲାସରେ କମ୍ପି ଉଠିଲେ,

ସ୍ତମ୍ଭସବୁ ହେଲେ ଉତ୍‌ପ୍ରେରିତ ।

ଏହିପରି ସ୍ଥଳରେ ଇଉରିପେଡିସ୍‌ ଏତାଦୃଶ ଭାବର ପ୍ରତିଧ୍ୱନି କରି କହିଛନ୍ତି— ଅବଶ୍ୟ ଏହାର ବାହୁଲ୍ୟ ହ୍ରାସ ପାଇଛି

ସକଳ ପର୍ବତ ଐଶ୍ୱରିକ ଅନୁଭୂତି ଲାଭ କଲେ ।

ସୋଫୋକ୍ଲିସ୍‌ ମଧ୍ୟ କଳ୍ପନାର ମହାନ୍‌ ଚିତ୍ର ଅଙ୍କନରେ ଦକ୍ଷତା ପ୍ରଦର୍ଶନ କରିଛନ୍ତି ଏଇ ଦୃଶ୍ୟରେ ଯେତେବେଳେ ମୃତ୍ୟୁମୁଖୀ ଅଜାକସ୍‌ ପ୍ରବଳ ଝଞ୍ଜାବତାସ ମଧ୍ୟରେ ଅନ୍ତିମ ସଂସ୍କାର ନିମନ୍ତେ ନିଜକୁ ପ୍ରସ୍ତୁତ କରୁଛି । ସେହିପରି ଆଉ ଏକ ଦୃଶ୍ୟ ହେଲା, ଯେଉଁଠି ସେ କହିଛନ୍ତି— ଟ୍ରୟରୁ ପ୍ରତ୍ୟାବର୍ତ୍ତନ ପରେ ସମୁଦ୍ର ଯାହାର ଅବ୍ୟବହୃତ ପୂର୍ବରୁ ଗ୍ରୀକ୍‌ମାନଙ୍କ ସମ୍ମୁଖରେ ଏକିଲିସ୍‌ କବରି-ନିଜ କବର ଉପରେ ଆବିର୍ଭୂତ ହୋଇଛି । ଶେଷୋକ୍ତ ଦୃଶ୍ୟଟିକୁ ସିମୋନିଡେସ୍‌ ମଧ୍ୟ ଅତି ଜୀବନ୍ତ ରୂପେ ବର୍ଣ୍ଣନା କରିଛନ୍ତି ଓ ଏଥିରେ ସେ କାହାରିଠାରୁ ନିକୃଷ୍ଟ ନୁହନ୍ତି । ମାତ୍ର ଏ ସ୍ଥଳରେ ସକଳ ସମ୍ଭାବ୍ୟ ଉଦାହରଣ ଉଦ୍ଧାର କରିବା ଏକ ଅସୀମ ବ୍ୟାପାର ।

ଏବେ ପୂର୍ବ ବିଷୟକୁ ଫେରି ଆସିବା । ମୁଁ ପୂର୍ବରୁ କହିଛି, କାବ୍ୟ କବିତାରେ ନିର୍ଦ୍ଦିଷ୍ଟ ମାତ୍ରାରେ ପୌରାଣିକ ଅତିରଞ୍ଜନ ରହିପାରେ ଓ ତାହା ଯୁକ୍ତିଗତ ବିଶ୍ୱାସର ସୀମାକୁ ସଂପୂର୍ଣ୍ଣ ଅତିକ୍ରମ କରିଯାଇପାରେ । ମାତ୍ର ବକ୍ତୃତା-ସମ୍ବନ୍ଧୀୟ ଚିତ୍ର-ବିଧାନର ମୁଖ୍ୟ ସୌନ୍ଦର୍ଯ୍ୟ ହେଲା ଶକ୍ତି ଓ ବାସ୍ତବତା । ଯେତେବେଳେ ବକ୍ତୃତାର ଭାଷାକୁ କାବ୍ୟାତ୍ମକ ଓ କାଳ୍ପନିକ ଢଙ୍ଗରେ ତାଳି ପ୍ରୟୋଗ କରିଯାଏ ତଥା ସବୁପ୍ରକାର ଅସମ୍ଭବ ବିଷୟ ତନ୍ମଧ୍ୟରେ ବର୍ଣ୍ଣିତ ହୁଏ ସେତେବେଳେ ସେପରି ଅପ୍ରାସଙ୍ଗିକ ବିଷୟମାନ ଅପ୍ରୀତିକର ଓ

କମ୍ପ ଚକମାକାର ହୋଇ ଉଠନ୍ତି । ଏହି ଯୋଗୁ ଆମର ସମକାଳୀନ ବଡ଼ ବଡ଼ ବକ୍ତାମାନଙ୍କଠାରୁ ବହୁତ କିଛି ଶିକ୍ଷା କରିବାକୁ ଅଛି—ସେମାନେ ଯେତେବେଳେ ଆମକୁ କରୁଣାତ୍ମକ ରଚନାର ସ୍ୱରରେ କହନ୍ତି ଯେ ସେମାନେ ଉତ୍ତରଣ୍ଡୀମାନଙ୍କୁ ଦେଖିଛନ୍ତି - ସେହି ସାଧୁ ପୁରୁଷମାନଙ୍କର ବୁଝିବା ଉଚିତ ଯେ ଓରେଷ୍ଟିସ୍ ଯେତେବେଳେ କହି ଉଠନ୍ତି –

ଖୋଲ, କହୁଛି ମୁଁ ଖୋଲ । ଚିହ୍ନିଚି ମୁଁ ତୋରେ
ମୋତେ ଆଶ୍ରୟ କରିଥିବା ତୁ ଏକ ଶୟତାନ । ଅନୁଭବେ ମୁହିଁ,
ବାହୁ-ବେଷ୍ଟନରେ ମୋତେ ଟାଣି ନେଇ ଫିଙ୍ଗିବାକୁ
ନର୍କର ଅତଳରେ ।

ଏହା ସବୁ ପାଗଳର ଦିବାସ୍ୱପ୍ନର ପ୍ରଳାପ ମାତ୍ର ।
ତା'ହେଲେ ବକ୍ତୃତା—ସମ୍ବନ୍ଧୀୟ

ଚିତ୍ର-ବିଧାନର ପ୍ରକୃତ ଅଭିପ୍ରାୟ କ'ଣ ହୋଇପାରେ ? ଏଥିରେ ସନ୍ଦେହ ନାହିଁ ଯେ, ଏହା ବହୁ ଭିନ୍ନ ଉପାୟରେ ଭାଷଣକୁ ଶକ୍ତି ଓ ଆବେଗ-ମଣ୍ଡିତ କରିପାରେ ; ବିଶେଷତଃ ସେଇ ସ୍ଥଳରେ, ଯେତେବେଳେ ବକ୍ତୃତାର ପ୍ରାୟୋଗିକ ଓ ବାଦାନୁବାଦମୂଳକ ଅଂଶରେ ଏହା ମିଶ୍ରିତ ହୋଇ ରହିଥାଏ । ଏହା ଶ୍ରୋତାଠାରେ କେବଳ ବିଶ୍ୱାସ ଜନ୍ମାଏ ନାହିଁ ; ତାହାକୁ ମୁଗ୍ଧ ଚକିତ କରିଏ । ଡେମୋସ୍ଥେନେସ୍‌ଙ୍କ ଶବ୍ଦାବଳୀର ପ୍ରଭାବ ଲକ୍ଷ୍ୟ କର :—"ମନେକର, ଏଇ ମୁହୂର୍ତ୍ତରେ ବିଚାରାଳୟର ବାହାରେ ଆତଙ୍କଜନକ କୋଳାହଳ ଶୁଣାଗଲା ଓ ସମ୍ବାଦ ମିଳିଲା ଯେ ବନ୍ଦୀଶାଳା ଭାଙ୍ଗି ଦିଆଯାଇଛି ଆଉ ବନ୍ଦୀମାନେ ଖସି ପଳାଇ ଯାଇଛନ୍ତି ତେବେ ଏଠିର କିଏ ବୃଦ୍ଧ ଲୋକ ଏଠି ଅଛି ଯେ କି ସବେଗରେ ଉଦ୍ଧାର ପାଇଁ ଧାଇଁ ନଯିବ ? ମାତ୍ର ଧର ନିଅ, କେହି ଜଣେ ଯଦି ଖବର ଦେଇ ଆସି ପହଞ୍ଚି ଯାଇ କହେ ଯେ ପ୍ରତିବାଦୀ ସେମାନଙ୍କୁ ମୁକ୍ତ କରି ଦେଇଛି, ତେବେ କ'ଣ କରିଯିବ ? କାହିଁକି, ତାହାକୁ ସେଇ ସ୍ଥାନରେ

ବିନା ବିଚାରରେ ପ୍ରାଣଦଣ୍ଡରେ ଦଣ୍ଡିତ କରାଯିବ !" ତୁଳନା କରି ଦେଖ, ଖେରୋନିୟାଠାରେ ପରାସ୍ତ ହେବାପରେ ଦାସମାନଙ୍କୁ ମୁକ୍ତି ଦେବା ପାଇଁ ଏଙ୍କ ପ୍ରସ୍ତାବ ଆଣିଥିବାରୁ ହାଇପେରିଡେସଙ୍କୁ ଯେତେବେଳେ ଦୋଷୀ କରାଗଲା ସେତେବେଳେ ସେ ଯେଉଁ ଉପାୟରେ ନିଜକୁ ଦୋଷମୁକ୍ତ କରିଥିଲେ । ସେ କହିଥିଲେ, "ଏହି ବିଚାର କୌଣସି ବାଗ୍ମୀ ପ୍ରସ୍ତୁତ କରି ନାହାନ୍ତି, ମାତ୍ର ଖେରୋନିୟାର ଯୁଦ୍ଧ ହିଁ ଏହାର ପ୍ରସ୍ତୁତକାରୀ ।' ପ୍ରମାଣ ମଧ୍ୟରେ ବକ୍ତାଙ୍କର ଏହି ହୃଦୟଗ୍ରାହୀ ଚିତ୍ର-କଳ୍ପନାର ସାହସିକ ପ୍ରୟୋଗ ଯୋଗୁ ସେ ସମସ୍ତ ତର୍କଗତ ପ୍ରତିବାଦର ସୀମା ଅତିକ୍ରମ କରି ଯାଇଛନ୍ତି । ଏ ସବୁ ପ୍ରସଙ୍ଗରେ ଆମ୍ଭର ସ୍ୱଭାବ ସେହି ବସ୍ତୁ ପ୍ରତି ଆକୃଷ୍ଟ ହୁଏ ଯାହା ତାହାକୁ ପ୍ରବଳ ଭାବେ ପ୍ରଭାବିତ କରେ । ଏଥି ଯୋଗୁ କଳ୍ପନା-ଚିତ୍ର ଆମକୁ ସକଳ ଯୁକ୍ତି ତର୍କଠାରୁ ଦୂରକୁ ନେଇଯାଏ ; ବିଚାରବୋଧ ଅଚଳ ହୋଇପଡ଼େ, ପ୍ରଖର ଆଲୋକରେ ନିଷ୍ପ୍ରଭ ହୋଇ ବସ୍ତୁଜଗତର ଘଟଣାରାଜି ଦୃଷ୍ଟି ଅନ୍ତରାଳରେ ଲୁଚିଯାନ୍ତି । ପୁଣି ଆମେ ଏପରି ପ୍ରଭାବିତ ହେବା ମଧ୍ୟ ଆଶ୍ଚର୍ଯ୍ୟଜନକ ନୁହେଁ ; କାରଣ ଦୁଇଟି ଶକ୍ତି ନିକଟ ସଂପର୍କରେ ଆସିଲେ ପ୍ରବଳ ଶକ୍ତି ଦୁର୍ବଳ ଶକ୍ତିକୁ ସର୍ବଦା ନିଜ ଭିତରେ ମିଶାଇ ଦିଏ ।

ଭାବନାର ଔଦାତ୍ତ୍ୟ ତଥା ଯେଉଁ କ୍ଷେତ୍ରରେ ଏହା ଆତ୍ମାର ସହଜାତ ମହାନତାରୁ ଜନ୍ମଲାଭ କରେ, ଅନୁକରଣ ଓ କଳ୍ପନା-ଚିତ୍ରର ପ୍ରୟୋଗ—ଏ ସମସ୍ତ ବିଷୟରେ ଏହି ସଂକ୍ଷିପ୍ତ ରୂପରେଖା ଯଥେଷ୍ଟ ହେବ ।

## ୧୬

ଏହାପରେ ଯେଉଁ ବିଷୟ ଆମର ଧ୍ୟାନ ଆକର୍ଷଣ କରେ ତାହା ହେଲା କାବ୍ୟାଳଂକାର । ମୁଁ ପୂର୍ବରୁ କହି ସାରିଛି ଯେ, ଅଳଂକାରର ସମୁଚିତ ବିଧାନ କରାଗଲେ ଔଦାତ୍ତ୍ୟ ସୃଷ୍ଟି ନିମନ୍ତେ ତାହା ପ୍ରଧାନ ଭୂମିକା ଗ୍ରହଣ

କରେ । ଏଠାରେ ଏ ବିଷୟର ସାଙ୍ଗୋପାଙ୍ଗ ଆଲୋଚନା କରିବା ଏକ ନୀରସ କାର୍ଯ୍ୟ ହେବ ଓ ଏହା ମଧ୍ୟ କେବେ ସମାପ୍ତ ହୋଇ ପାରିବ ନାହିଁ । ତେଣୁ ମୁଁ ଯାହା ଉପସ୍ଥାପିତ କରିଛି ତାହାକୁ ପ୍ରତିଷ୍ଠା କରିବା ପାଇଁ ଅଧିକ ଗୌରବଦ୍ଧିକା ନ କରି ଭାଷାକୁ ଗରିମା ପ୍ରଦାନ କରିବାରେ ଯେଉଁ ଅଳଂକାର ଗୁଡ଼ିକ ସର୍ବୋପରି ପ୍ରଭାବଶାଳୀ ସେଗୁଡ଼ିକରୁ କେତୋଟି ଉପରେ ବିହଙ୍ଗାବଲୋକନ କରିବି ।

ଦେମୋସ୍ଥେନେସ୍ ସ୍ୱକୀୟ ରାଜନୈତିକ ବିଚକ୍ଷଣତାର ସମର୍ଥନ କରି ଲାଗିଛନ୍ତି । ସେ ସ୍ୱଭାବତଃ ଏଇ ଭାବରେ ଯୁକ୍ତି ବାଢ଼ିବା କଥା "ଏଥେନ୍ସର ଅଧିବାସୀଗଣ, ଗ୍ରୀସ (Hellas) ର ସ୍ୱାଧୀନତା ପାଇଁ ସଂଗ୍ରାମ କରିବାକୁ ଯାଇ ଆପଣମାନେ ଭୁଲ କରି ନଥିଲେ । ଏହା ପରିସ୍ଥିତି ଦୃଷ୍ଟିରୁ ଆପଣ-ମାନଙ୍କ ପକ୍ଷରେ ଅପରିହାର୍ଯ୍ୟ ଥିଲା । ମାରାଥନ୍, ସଲମିସ୍ ଓ ପ୍ଲାଟେଇୟାଠାରେ ଯେଉଁମାନେ ସଂଗ୍ରାମ କରିଥିଲେ ସେମାନେ କୌଣସି ଅନ୍ୟାୟ କରି ନ ଥିଲେ ।" ଏହା ନ କରି ସେ ପରମ ବିଜୟୋଲ୍ଲାସର ଅତର୍କିତ ମୁହୂର୍ତ୍ତରେ କୌଣସି ଉତ୍ପ୍ରେରିତ ଭବିଷ୍ୟ ବକ୍ତା ଭଳି ମୃତ ବୀରମାନଙ୍କ ଉଦ୍ଦେଶ୍ୟରେ ବିଶ୍ରୁତ ସାନୁନୟ ନିବେଦନ କରି ବସିଛନ୍ତି—"ଆପଣମାନେ କୌଣସି ଅନ୍ୟାୟ କରି ନାହାନ୍ତି, ଏହା ମୁଁ ସେହି ବ୍ୟକ୍ତିମାନଙ୍କ ଶପଥ ନେଇ କହିବି ଯେଉଁ-ମାନେ ମାରାଥନଠାରେ ଶତ୍ରୁର ସମ୍ମୁଖୀନ ହୋଇଥିଲେ ।" ସେ ଶପଥୋକ୍ତି ଅଳଂକାର ପ୍ରୟୋଗ କରିଛନ୍ତି ଯାହାକୁ ମୁଁ ଏଠାରେ ସମ୍ବୋଧନ ବୋଲି ନାମିତ କରୁଛି ଆଉ ଏହା ଦ୍ୱାରା ସେ କ'ଣ ହାସଲ କରିଛନ୍ତି । ସେ ଏଥେନୀୟ ପୂର୍ବପୁରୁଷଙ୍କୁ ଦେବତ୍ୱ କୋଟିକୁ ଉନ୍ନୀତ କରି ଦେଇଛନ୍ତି । ତଦ୍ୱାରା ସେ ଦେଖାଇବାକୁ ଚାହିଁଛନ୍ତି ଯେ ସ୍ୱଦେଶ ପାଇଁ ପ୍ରାଣପାତ କରିଥିବା ବୀରମାନଙ୍କୁ ଆମେ ଦେବତା ଭଳି ଆବାହନ କରିବା ଉଚିତ । ଗ୍ରୀସର ପ୍ରାଚୀନ ଯୋଦ୍ଧାମାନଙ୍କ ବୀରତ୍ୱପୂର୍ଣ୍ଣ ଗୌରବରେ ସେ ନିଜର ବିଚାରକମାନଙ୍କ ହୃଦୟ ପରିପୂର୍ଣ୍ଣ କରି ଦେଇଛନ୍ତି । ଯୁକ୍ତିର ଗତାନୁଗତିକ ମାର୍ଗ ପରିହାର କରି ସେ ଔଦାର୍ଯ୍ୟ ଓ ଆବେଗର ତୁଙ୍ଗ ଶିଖରରେ ଆରୋହଣ କରି ଶପଥର ଚମତ୍କାରି

ବର୍ଣ୍ଣନା ଦ୍ୱାରା ବିଶ୍ୱାସ ଜନ୍ମାଇବାକୁ ଚେଷ୍ଟା କରନ୍ତି । ସେ ବାକ୍ୟପଟୁତାର ରୂପକ ଉପମେକାଙ୍କୁ ମୋହନୀ ଶକ୍ତି ପ୍ରୟୋଗ କରୁଥିଲେ ଓ ତାଦ୍ୱାରା ସ୍ୱଦେଶବାସୀମାନଙ୍କ ତ୍ରୁଟିପୂର୍ଣ୍ଣ ମନର ସେବା କରୁଥିଲେ—ଆଉ ତାଙ୍କର ସାହସପୂର୍ଣ୍ଣ ଉଦ୍‌ବୋଧନରେ ଉଜ୍ଜୀବିତ ହୋଇ ଦୁଃଖ ଦୁର୍ବିପାକର ଊର୍ଦ୍ଧ୍ୱକୁ ଉଠି ସେମାନେ ଅନୁଭବ କରୁଥିଲେ ଯେ ମାରାଥନ ଓ ସାଲାମିସ୍‌ର ବିଜୟଠାରୁ ଖେରୋନିଆର ପରାଜୟ କମ୍ ଗୌରବାବହ ନୁହେଁ । ଏ ସମସ୍ତ ସେ ଶ୍ଳେଷମାନ ଅଳଂକାର ପ୍ରୟୋଗ ଦ୍ୱାରା ସୃଷ୍ଟି କରି ପାରିଛନ୍ତି ଓ ଶ୍ରୋତାମାନଙ୍କୁ ତା ଦ୍ୱାରା ନିଜ ସହିତ ଭସାଇ ନେଇ ଯାଇଛନ୍ତି ।

ଶୁଣିବାକୁ ମିଳେ ଯେ, ଏହି ଶପଥୋକ୍ତି ଅଳଂକାରର ମୂଳ ଇଉପୋଲିସଙ୍କ ରଚନାରେ ବିଦ୍ୟମାନ

ମୋ ସଂଗ୍ରାମ ନାମେ, ମାରାଥନ ନାମେ ଶପଥ କରି ମୁଁ କହୁଛି,
ପ୍ରାଣରେ ମୋ ଦେବ ଯିଏ ବ୍ୟଥା ଅନୁତାପ ଆଜି ଦିନେ
କରିବ ସେ ନଷ୍ଟ ।

ମାତ୍ର କେବଳ ଶପଥ ପ୍ରୟୋଗ ଦ୍ୱାରା କୌଣସି ଉଦାତ୍ତ ସୃଷ୍ଟି କରାଯାଇ ନପାରେ । ଯଥା ସ୍ଥାନରେ, ଯଥା ବିଧିରେ, ଯଥାବସରରେ ଏବଂ ଯଥା ଅଭିପ୍ରାୟ ରଖି ପ୍ରଯୁକ୍ତ ହେବା ଉପରେ ଏହାର ଗରିମା ନିର୍ଭର କରେ । ଇଉପୋଲିସଙ୍କ ଶପଥ ବାକ୍ୟରେ କେବଳ ଶପଥ ଛଡ଼ା ଆଉ କିଛି ନାହିଁ ଓ ଯେଉଁ ଏଥେନୀୟମାନଙ୍କ ଉଦ୍ଦେଶ୍ୟରେ ଏହା କୁହା ଯାଇଥିଲା ସେ ଯାବତ ସେମାନେ ସମୃଦ୍ଧିଶାଳୀ ଥିଲେ ଓ ସେମାନଙ୍କୁ ସାନ୍ତ୍ୱନା ପ୍ରଦାନ କରିବାର କୌଣସି ପ୍ରୟୋଜନ ନଥିଲା । ଆଉ ମଧ୍ୟ, ଦେମୋସ୍ଥେନେସ୍‌ଙ୍କ ସଦୃଶ, କବି ମୃତ ବୀରମାନଙ୍କର ଦେବତା ରୂପେ ଶପଥ ଗ୍ରହଣ କରି ନାହାନ୍ତି ଯାହାଦ୍ୱାରା ସେମାନଙ୍କ ବିକ୍ରମ ସମ୍ବନ୍ଧରେ ଶ୍ରୋତାମାନଙ୍କ ମନରେ ଏକ ନିର୍ଦ୍ଦିଷ୍ଟ

ଧାରଣା ସୃଷ୍ଟି ହୋଇପାରେ ; ମାତ୍ର ସେ ବୀରମାନଙ୍କୁ ଛାଡ଼ି ଯୁଦ୍ଧ ସମ୍ପର୍କିତ ଆଉ କୌଣସି ବସ୍ତୁ ପ୍ରତି ଧ୍ୟାନ ଦେଇଛନ୍ତି । କିନ୍ତୁ ଡେମୋସ୍ଥେନେସ୍ ଏତେ କୌଶଳ ସହକାରେ ଶପଥୋକ୍ତିର ପ୍ରୟୋଗ କରିଛନ୍ତି ଯେ, ଖେରୋନିଆର ପରାଜୟ ପରେ ସ୍ୱଦେଶବାସୀଙ୍କୁ ସମ୍ବୋଧନ କରି କହିବା ବେଳେ ସେ ସେମାନଙ୍କ ମନରୁ ସବୁ ପ୍ରକାର ଦୁର୍ବିପାକର ବୋଧ ଲୋପ କରି ଦେଇଛନ୍ତି, ଆଉ ସେଥି ସଙ୍ଗେ ସେ ଏ କଥା ମଧ୍ୟ ସେମାନଙ୍କ ସମ୍ମୁଖରେ ପ୍ରମାଣ କରୁଛନ୍ତି ଯେ ସେମାନେ କୌଣସି ଭୁଲ କରି ନାହାନ୍ତି, ଗୋଟିଏ ଉଦାହରଣ ମଧ୍ୟ ଦେଉଛନ୍ତି, ଶପଥ ଦ୍ୱାରା ସ୍ୱଯୁକ୍ତିକୁ ଦୃଢ଼ ରୂପେ ପ୍ରତିଷ୍ଠା କରୁଛନ୍ତି ଓ ମୃତମାନଙ୍କର ପ୍ରଶସ୍ତି ଗାନ କରି ଜୀବିତମାନଙ୍କୁ ପ୍ରୋତ୍ସାହିତ କରୁଛନ୍ତି । ଆଉ ତାଙ୍କ ମନରେ ଉଠିଥିବା ଏକ ସମ୍ଭାବ୍ୟ ପ୍ରଶ୍ନ –"ଡେମୋସ୍ଥେନେସ୍, ଆପଣଙ୍କ ନୀତି ତ ପରାଜୟରେ ସମାପ୍ତ ହେଲା, ବିଜୟ ନାମରେ ଶପଥ କରି ପାରିବେ କି ?"—ସମାଧାନ କରି ବକ୍ତା ନିଜ ଭାଷାର ଗୁରୁତ୍ୱ ପ୍ରତି ଦୃଷ୍ଟି ଦେଇଛନ୍ତି ଓ ପ୍ରତିପକ୍ଷଙ୍କୁ ସୁଯୋଗ ନଦେବା ପାଇଁ ପ୍ରତ୍ୟେକ ଶବ୍ଦକୁ ନିର୍ବାଚନ କରିଛନ୍ତି—ସେ ଏହା ଦ୍ୱାରା ଆମକୁ ଦେଖାଇ ଦେଉଛନ୍ତି ଯେ ଆମର ପ୍ରେରଣାପୂର୍ଣ୍ଣ ମୁହୂର୍ତ୍ତରେ ମଧ୍ୟ ଔଚିତ୍ୟ ଲଗାମ ଧରି ରହିବା ଉଚିତ ।' ତାଙ୍କର ଶବ୍ଦାବଳୀକୁ ଲକ୍ଷ୍ୟ କର 'ଯେଉଁମାନେ ମାରାଥନଠାରେ ବିପଦର ସମ୍ମୁଖୀନ ହୋଇଥିଲେ, ଯେଉଁମାନେ ସାଲମିସ୍ ଓ ଆର୍ଟେମିସିଅମ୍‌ର ସମୁଦ୍ରଯୁଦ୍ଧରେ ଲଢ଼ିଥିଲେ, ଯେଉଁମାନେ ପ୍ଲାଟେଇୟାଠାରେ ସୈନ୍ୟ-ଶ୍ରେଣୀ ମଧ୍ୟରେ ଦଣ୍ଡାୟମାନ ଥିଲେ ।" ଲକ୍ଷ୍ୟ କର, ସେ କୁଆପି କହୁ ନାହାନ୍ତି, "ଯେଉଁମାନେ ବିଜୟଲାଭ କରିଥିଲେ"; ସେହି ଯୁଦ୍ଧମାନଙ୍କର କୃତିତ୍ୱପୂର୍ଣ୍ଣ ପରିଣାମସୂଚକ କୌଣସି ଶବ୍ଦ ସେ ବ୍ୟବହାର କରୁନାହାନ୍ତି ଯାହାକି ଖେରୋନିଆ ସହିତ ସମାନ୍ତରାଳ ଘଟଣାକୁ ନଷ୍ଟ କରି ଦେଇଥାନ୍ତା ।– ଆଉ ସେହି କାରଣରୁ ସେ ନିଜର ଶ୍ରୋତାମାନଙ୍କର ହୃଦୟ ହରଣ କରି ସେମାନଙ୍କୁ ନିଜ ସହିତ ଆଗକୁ ନେଇ ଚାଲିଛନ୍ତି ଓ ସାଙ୍ଗେ ସାଙ୍ଗେ ଯୋଗ କରୁଛନ୍ତି— "ଏଇସଖେନେସ୍, କେବଳ କୃତିତ୍ୱ ହାସଲ କରିଥିବା ବ୍ୟକ୍ତିମାନଙ୍କୁ ନୁହେଁ,

ସମସ୍ତଙ୍କ ସର୍ବସାଧାରଣଙ୍କ ବ୍ୟୟରେ ରାଜ୍ୟ ପକ୍ଷରୁ ସମାଧିସ୍ଥ କରାଯାଇଥିଲା ।"

୧୨

ମୋର ଅଧ୍ୟୟନରୁ ଲାଭ କରିଥିବା ଏକ ସତ୍ୟକୁ ମୁଁ ଏଠାରେ ସଂକ୍ଷେପରେ ଉପସ୍ଥାପିତ କରିବାକୁ ଉଚିତ ମନେ କରୁଛି । ତା'ହେଲା, ଔଦାତ୍ତ୍ୟ ଏକ ପ୍ରାକୃତିକ ନିୟମାନୁଯାୟୀ ଅଳଙ୍କାର ଗୁଡ଼ିକରୁ ବଳ ପ୍ରାପ୍ତ ହୁଏ ଓ ବଦଳରେ ଏକ ବିଶିଷ୍ଟ ରୀତିରେ ସେଗୁଡ଼ିକୁ ଅବଲମ୍ବନ ପ୍ରଦାନ କରେ । ଏହାର ବିଶ୍ଳେଷଣ କଲେ ଜଣାଯାଏ—ଅଳଙ୍କାର ପ୍ରୟୋଗର ଏକ ସ୍ୱାଭାବିକ ଲକ୍ଷଣ ହେଲା, ଏହା ଏକ ପ୍ରକାର ପ୍ରବଞ୍ଚନାତ୍ମକ ସନ୍ଦେହ ଜାତ କରେ ; ଏଥିରୁ ଏକ ପ୍ରକାର ବଞ୍ଚନା, ଚକ୍ରାନ୍ତ ଓ ମିଥ୍ୟା ହେତୁବାଦର ଧାରଣା ସୃଷ୍ଟି ହୁଏ—ବିଶେଷତଃ ସମ୍ବୋଧିତ ବ୍ୟକ୍ତି ଯଦି ଜଣେ ଶ୍ରେଷ୍ଠ ସ୍ଥିତିର ସର୍ବମୟ କର୍ତ୍ତା, ବିଚାରକ କିମ୍ବା ତତୋଽଧିକ ଜଣେ ସ୍ୱେଚ୍ଛାଚାରୀ ଶାସକ, ରାଜା, ସାମରିକ ଶାସନକର୍ତ୍ତା କିମ୍ବା ଉଚ୍ଚ ପଦାଧିରୂଢ଼ ବ୍ୟକ୍ତି ହୋଇଥାନ୍ତି ତେବେ ମଧ୍ୟ ଏହିପରି ହୋଇଥାଏ । ଯଦି ଏଇପରି ଜଣେ ବ୍ୟକ୍ତି ଅନୁଭବ କରନ୍ତି ଯେ କୌଶଳୀ ବକ୍ତା ଜଣକ ତାଙ୍କୁ ନିର୍ବୋଧ ବାଳକଟିଏ ଭଳି ବ୍ୟବହାର କରୁଛି ଓ ତାଙ୍କ ଚକ୍ଷୁରେ ଧୂଳି ଫିଙ୍ଗିବାକୁ ଚେଷ୍ଟା କରୁଛି, ସେ ସାଙ୍ଗେ ସାଙ୍ଗେ ରାଗାନ୍ୱିତ ହୋଇ ଯାଆନ୍ତି ଆଉ ଏତାଦୃଶ ମିଥ୍ୟା ହେତୁବାଦ ତାଙ୍କର ବୋଧଶକ୍ତି ପ୍ରତି ଅପମାନର ସୂଚନା ଦେଉଛି ସେ କୋପାନ୍ୱିତ ହୋଇ ଉଠନ୍ତି ଓ ଆଉ ପଦେ ହେଲେ କଥା ଶୁଣିବାକୁ ଚାହାନ୍ତି ନାହିଁ ; ଅଥବା ସେ କ୍ରୋଧ ସମ୍ବରଣ କଲେ ମଧ୍ୟ ତଥାପି ସେ ଭାଷଣର ପ୍ରବର୍ତ୍ତନାମୂଳକ ଶକ୍ତି ଦ୍ୱାରା ପ୍ରଭାବିତ ହେବାକୁ ସମ୍ପୂର୍ଣ୍ଣ ବୀତସ୍ପୃହ ହୋଇ ପଡ଼ନ୍ତି । ଏଣୁ ଏଥିରୁ ଜଣାଯାଏ ଯେ, ଅଳଙ୍କାର ଅଧିକ ଉଦ୍ଦେଶ୍ୟ ସାଧକ ହୁଏ ଯେତେବେଳେ ତାହା ଛଦ୍ମ ରୂପରେ ପ୍ରକାଶ ପାଏ । ତା'ହେଲେ ଅଳଙ୍କାର ପ୍ରୟୋଗରେ

ଏଇ ଯେଉଁ ଅବିଶ୍ୱାସ ଉଠିଥାଏ, ତା'ପାଇଁ ଆମେ ଔଦାର୍ଯ୍ୟ ଓ ଆବେଗର ଶକ୍ତିଶାଳୀ ସହାୟତା ନେବା ଉଚିତ । କାରଣ କଳା ଥରେ ଔଦାର୍ଯ୍ୟ ଓ ଆବେଗ ସହିତ ସମ୍ବନ୍ଧିତ ହେଲେ ସେମାନଙ୍କ ପ୍ରଭାବରେ ଆତ୍ମଗୋପନ କରେ ଓ ସବୁ ପ୍ରକାର ସନ୍ଦେହର ଊର୍ଦ୍ଧ୍ୱରେ ରହେ । ଏ କଥାର ପ୍ରମାଣ ସ୍ୱରୂପ ମୁଁ କେବଳ ପୂର୍ବୋକ୍ତ ଉଦାହରଣ ପ୍ରତି ନିର୍ଦ୍ଦେଶ କରିବ :—"ମୁଁ ସେଇ ବ୍ୟକ୍ତି-ମାନଙ୍କର ଶପଥ ନେଉଛି" ଇତ୍ୟାଦି । ଏଠାରେ ବକ୍ତାଙ୍କର ଅଳଙ୍କାରର ଅତ୍ୟଧିକ ଔଜ୍ଜ୍ୱଲ୍ୟ ହିଁ ଏହାକୁ ଅଳଙ୍କାର ରୂପେ ଆମ ନିକଟରେ ଚିହ୍ନିତ କରୁ ନାହିଁ । କାରଣ ସର୍ବବ୍ୟାପୀ ସୂର୍ଯ୍ୟ-ରଶ୍ମିରେ ଯେପରି ତାରକାମାନଙ୍କର ନିଷ୍ପ୍ରଭ କାନ୍ତି ଦୃଷ୍ଟିପଥରୁ ଅନ୍ତର୍ହିତ ହୁଏ, ସେହିଭଳି ଉଦାତ୍ତର ରଶ୍ମିସମ୍ପାତରେ ସକଳ ଆଳଂକାରିକ ଭ୍ରାନ୍ତ କଳ୍ପନ ଲୋପ ପାଇଥାଏ । ଚିତ୍ରକଳାରେ ମଧ୍ୟ ତତ୍ତୁଲ୍ୟ ମିଥ୍ୟାଙ୍କନ ଜାତ ହୋଇଥାଏ । ଯେତେବେଳେ ଛାୟା ଓ ଆଲୋକ ରଙ୍ଗ ଦ୍ୱାରା ଚିତ୍ରଣ କରାଯାଏ, ଯଦିଓ ସେ ଦୁଇଟି ଗୋଟିଏ ପୃଷ୍ଠଭୂମି ଉପରେ ପାଖାପାଖି ବିଦ୍ୟମାନ ଥାନ୍ତି, ତଥାପି ସେଥି ମଧ୍ୟରୁ ଆଲୋକହିଁ ପ୍ରଥମେ ଦୃଷ୍ଟିରେ ପଡ଼େ ଓ ତା' କେବଳ ସୁସ୍ପଷ୍ଟ ନୁହେଁ, ଖୁବ୍ ସମୀପବର୍ତ୍ତୀ ମଧ୍ୟ ଜଣାପଡ଼େ । ସେହି ଭାବେ ଏକ ପ୍ରକାର ନୈସର୍ଗିକ ନିକଟ ସଂପର୍କ ଓ ସ୍ୱକୀୟ ସମୁଜ୍ଜ୍ୱଳତା ହେତୁ ଭାଷାର ଔଦାର୍ଯ୍ୟ ଓ ଆବେଗ ଆମ ଆତ୍ମାର ନୈକଟ୍ୟ ଲାଭ କରିଥାଏ ତଥା ଅଳଙ୍କାରର କୃତ୍ରିମ ବୈଶିଷ୍ଟ୍ୟକୁ ଆବରଣରେ ଢ଼ାଙ୍କି ସତେକି ଗୋପନ ରଖେ ଓ ଆମେ ଅଳଙ୍କାର ସମ୍ବନ୍ଧରେ ସଚେତନ ହେବା ପୂର୍ବରୁ ଆମର ମାନସ ଚକ୍ଷୁରେ ସର୍ବଦା ଉଦ୍ଭାସିତ ହୋଇ ଉଠେ ।

## ୧୮

ପ୍ରଶ୍ନାଳଙ୍କାର ଆଦିରେ ମଧ୍ୟ ଏକ ପ୍ରକାର ବିଶେଷ ଗୁଣ ରହିଛି ଯାହା ଶ୍ରୋତୃବର୍ଗଙ୍କୁ ଉଦ୍ଦୀପିତ କରିବାରେ ଓ ବକ୍ତାର ବାକ୍ୟରେ ଶକ୍ତି ଭରି ଦେବାରେ ପ୍ରବଳ ଭାବେ ସାହାଯ୍ୟ କରେ । "ଅଥବା ମୋତେ କୁହ, ତୁମେ

କ'ଣ ଏଣେ ତେଣେ ଧାଇଁ ଧାଇଁ ଜଣେ ଅନ୍ୟ ଜଣକୁ ପଚାରିବାକୁ ଚାହଁ ଯେ କିଛି ସମ୍ବାଦ ଅଛି କି ନାହିଁ ? ଜଣେ ମାସିଡନର ବ୍ୟକ୍ତି ନିଜକୁ ଗ୍ରୀସ୍‌ର ମାଲିକ କରି ବସିଲଣି—ଏହାଠାରୁ ଆଉ କେଉଁ ବଡ଼ ଖବର ତୁମେ ପାଇବାକୁ ଚାହୁଁଛ ? ଫିଲିପ୍ କ'ଣ ମରି ଗଲେଣି ? ନାଁ, ସେ କିନ୍ତୁ ପୀଡ଼ିତ ଅଛନ୍ତି । କିନ୍ତୁ ସେଥିରେ ତୁମର କ'ଣ ଯାଏ ଆସେ ? ଯଦିବା ତାଙ୍କର କିଛି ହୋଇଯାଏ, ତୁମେ ଅବିଳମ୍ବେ ଆଉ ଜଣଙ୍କୁ ଫିଲିପ୍ ରୂପେ ଆଣି ଠିଆ କରି ଦେବ ।" କିମ୍ବା ଏଇ ଉକ୍ତିରେ "ମାସିଡନ ବିରୁଦ୍ଧରେ ଆମେ ଯୁଦ୍ଧଯାତ୍ରା କରିବା କି ? ଜଣେ ପଚାରୁଛନ୍ତି, ଆମେ ଯାଇ କେଉଁଠି ଅବତରଣ କରିବା ? ଯୁଦ୍ଧ ହିଁ ଫିଲିପ୍‌ଙ୍କର ଦୁର୍ବଳ ସ୍ଥଳମାନଙ୍କର ଅବସ୍ଥିତି ଆମ ଆଗରେ ଉଦ୍‌ଘାଟନ କରିଦେବ ।" ଏ ସବୁ କଥା ଗୁଡ଼ିକ ଯଦି ନିକୃଷ୍ଟ ରୂପେ କୁହାଯାଇଥାନ୍ତା ତେବେ ଏହା ସକଳ ସାମର୍ଥ୍ୟ ହରାଇ ବସିଥାନ୍ତା । ଆମେ ଏଥିରେ ଦେଖୁଛନ୍ତି, ଏହା ପ୍ରଶ୍ନ ଓ ଉତ୍ତରର ଦ୍ରୁତ ପରିବର୍ତ୍ତନରେ ପରିପୂର୍ଣ୍ଣ । ବକ୍ତା ନିଜକୁ ପ୍ରତ୍ୟୁତ୍ତର କରୁଛନ୍ତି ସତେ ଯେପରି ସେ ଅନ୍ୟ କେଉଁ ବ୍ୟକ୍ତିର ପ୍ରତିବାଦର ସମ୍ମୁଖୀନ ହୋଇଛନ୍ତି । ଆଉ ଉକ୍ତ ଅଳଙ୍କାର ତାଙ୍କର ବାଣୀଭଙ୍ଗୀକୁ କେବଳ ଉଦାତ୍ତ କରି ନାହିଁ ତତ୍ ସଂଗେ ଅଧିକ ବିଶ୍ୱାସଜନକ ମଧ୍ୟ କରି ପାରିଛି । କାରଣ କୌଣସି ଆବେଗ ପ୍ରଦର୍ଶନ ସେତିକବେଳେ ଶ୍ରୋତାମାନଙ୍କ ଉପରେ ଅତ୍ୟନ୍ତ ପ୍ରଭାବ ପକାଇ ଥାଏ ଯେତେବେଳେ ତାହା ବକ୍ତାଙ୍କ ଶ୍ରମ – ସାଧ୍ୟ ବଚନ ବିନ୍ୟାସ ପ୍ରସୂତ ନ ହୋଇ ପରିସ୍ଥିତିରୁ ସ୍ୱତଃ ଉଚ୍ଚାରିତ ହେବାଭଳି ପ୍ରତୀତ ହୁଏ ; ଆଉ ପ୍ରଶ୍ନ ପଚାରି ନିଜେ ନିଜକୁ ଉତ୍ତର ପ୍ରଦାନ କରିବାର ଏଇ କୌଶଳ ଆବେଗର ମୁହୂର୍ତ୍ତିକୁ ପୁନରୁତ୍ପାଦନ କରେ । କାରଣ କୌଣସି ବ୍ୟକ୍ତିକୁ ହଠାତ୍ ପ୍ରଶ୍ନ ପଚରା ଗଲେ ସେ ଚମତ୍କୃତ ହୋଇ ଉକ୍ତ ପ୍ରଶ୍ନର ଯେଉଁ ଉତ୍ତର ଦେଇ ବସନ୍ତି ତାହା ହୁଏ ତାଙ୍କର ଅକୃତ୍ରିମ ମନୋଭାବର ଅସତର୍କ ଅଭିବ୍ୟକ୍ତି । ସେହିଭଳି ପ୍ରଶ୍ନ ଓ ପ୍ରଶ୍ନୋତ୍ତର ଅଳଙ୍କାର ଶ୍ରୋତାମାନଙ୍କର ବିଚାରକୁ ଅଧୀଭୂତ କରିଦିଏ ଓ ଏକ ପ୍ରକାର ବିଶ୍ୱାସ କରିବାକୁ ପ୍ରବର୍ତ୍ତାଏ ଯେ ବାସ୍ତବରେ ପ୍ରତ୍ୟେକ ଦିଗରୁ ଯାହା ଶ୍ରମ-

ପ୍ରସୂତ ତାହା 'ବକ୍ତାଙ୍କର ମୁହୂର୍ତ୍ତର ପ୍ରେରଣାରୁ ହିଁ ଉତ୍ପନ୍ନ ।

ହେରୋଦୋତସ୍ଙ୍କ ରଚନାରେ ଗୋଟିଏ ଛନ୍ଦ ମିଳେ ଯାହା ସାଧାରଣତଃ ଅସାମାନ୍ୟ ଉଦାତ୍ତ ରୂପେ ପ୍ରଶଂସିତ·········

## ୧୯

ସଂଯୋଜକ ଶବ୍ଦମାନଙ୍କର ଅପସାରଣ କୌଣସି ବର୍ଣ୍ଣନାରେ ଦ୍ରୁତ ଉଦ୍ଦାମ ଗତି ଓ ପ୍ରବଳ ପ୍ରବାହର ଉଲ୍ଲାସ ଭରିଦିଏ, ମନେହୁଏ, ସ୍ୱୟଂ ଲେଖକଙ୍କୁ ତାଙ୍କର ଶବ୍ଦାବଳୀ ବେଗରେ ଘୁଞ୍ଚି ଆଗକୁ ମାଡ଼ି ଚାଲିଛନ୍ତି । ଜେନୋଫୋନଙ୍କ ରଚନାର ଗୋଟିଏ ଉଦାହରଣ ହେଲା "ଢାଲ ଗୁଡ଼ିକରୁ ଏକତ୍ର ଶବ୍ଦ ସୃଷ୍ଟି କରି ସେମାନେ ଆଗକୁ ମାଡ଼ିଗଲେ, ଲଢ଼ିଲେ, ଶତ୍ରୁମାନଙ୍କୁ ହତ୍ୟା କଲେ, ପ୍ରାଣପାତ କଲେ ।" ଅଡ଼ିଶୀରେ ମଧ୍ୟ ଇଉରିଲୋଖସ୍‌ଙ୍କ ବାକ୍ୟରେ ଏଇ ଭଳି :—

ଚାଲିଗଲୁ
ତବାଦେଶେ ଆମ୍ଭେ ବନଭୂମି-ଦୁଃଖ୍ୟାତେ ଥେ
ଶୈଳ ଅଧିତ୍ୟକା ମଧ୍ୟେ ଗଢ଼ା ଏକ
ରଜକାନ୍ତି ପ୍ରାସାଦ ଭେଟିଲୁ ଯେ ଆମ୍ଭେ ।

ପୂର୍ଣ୍ଣଚ୍ଛେଦ ନଥାଇ ଏହି ବାକ୍ୟ ଗୁଡ଼ିକ ପ୍ରତ୍ୟେକ ପରସ୍ପର ଠାରୁ ବିଚ୍ଛିନ୍ନ ହେଲେ ମଧ୍ୟ ମାନସିକ ଅଶାନ୍ତି ବଶତଃ କେହି ଜଣେ ଯେପରି ତାହାର ବକ୍ତୃତା ମଧ୍ୟରେ ହଠାତ୍ ଅଟକି ଯାଇ ପୁଣି ଶୀଘ୍ର ଶୀଘ୍ର 'କହିଚାଲେ, ସେହିପରି ଜୀବନ୍ତ ଉଦ୍ଭବ ସୃଷ୍ଟି କରେ । ସଂଯୋଜକ ଶବ୍ଦାବଳୀର ବର୍ଜନକାରୀ ଅଳଂକାର ପ୍ରୟୋଗ ଦ୍ୱାରା ହୋମର ଏବଂବିଧ ପ୍ରଭାବର ଅଭିବ୍ୟକ୍ତି ଦାନ କରିଛନ୍ତି ।

# ୨୦

ମାତ୍ର ବିଭିନ୍ନ ଅଳଙ୍କାର ଗୁଡ଼ିକର ସମ୍ମିଶ୍ରିତ ଉକ୍ତି ଶକ୍ତିର ଅନୁକୂଳ ଅନ୍ୟ କିଛି ନାହିଁ -ଯେତେବେଳେ ଦୁଇ ବା ତିନୋଟି ଅଳଙ୍କାର ପାରସ୍ପରିକ ସହଯୋଗ ଏକତ୍ର କରି ବକ୍ତୃତାର ଶକ୍ତି, ଯୁକ୍ତିର ଅକାଟ୍ୟତା ଓ ସୌନ୍ଦର୍ଯ୍ୟ ବର୍ଦ୍ଧନରେ ସାହାଯ୍ୟ କରନ୍ତି । ଏଣୁ ଦେମୋସ୍ଥେନେସ୍ ତାଙ୍କର ମେଇଦିଆସ୍‌ଙ୍କ ବିରୁଦ୍ଧରେ ଦେଇଥିବା ଭାଷଣରେ ସେଇ ଏକ ପ୍ରକାର ଶବ୍ଦାବଳୀର ପୁନରାବୃତ୍ତି କରିଛନ୍ତି ଓ ତାଙ୍କର ବାକ୍ୟଗୁଡ଼ିକୁ ଭଙ୍ଗି ଭଙ୍ଗି ପରିବେଷଣ କରିଛନ୍ତି । ସେହି ଜୀବନ୍ତ ବର୍ଣ୍ଣନାତ୍ମକ ଅଂଶଟି ହେଲା "ଯେ ପ୍ରହାର ଖାଇଥାଏ ସେ ବହୁ ଦୁଃଖ ବ୍ୟଥା ଅନୁଭବ କଲେ ମଧ୍ୟ ଆକାର ଇଙ୍ଗିତରେ ଅନ୍ୟ କାହାକୁ କହିପାରେ ନାହିଁ ।" ତା ପରେ ସ୍ୱ ଭାଷଣର ଗତି ପରିବର୍ତ୍ତନ ଓ ତାହାକୁ ସ୍ଥିର ନିଶ୍ଚଳ ରୂପ ନଦେଖିବା ପାଇଁ (କାରଣ ସ୍ଥିରତା ଅର୍ଥ ବିଶ୍ରାନ୍ତି, ମାତ୍ର ଆବେଗ ଆତ୍ମାର ବିକ୍ଷୋଭ ଓ ଶୃଙ୍ଖଳ୍ୟର ଅନୁକରଣ କରି ଭାଷାର କିଛିଟା ବିଶୃଙ୍ଖଳା ଦେଖନ୍ତି) ସେ ହଠାତ୍ ଅନ୍ୟ ଏକ ଦିଗରେ ଶୀଘ୍ର ଶୀଘ୍ର ଗତି କରି ଯାଆନ୍ତି ଓ ନିଜର ବାକ୍ୟାବଳୀକୁ ପୁନଶ୍ଚ ଭାଙ୍ଗି ଲେଖନ୍ତି ତଥା ସେଗୁଡ଼ିକୁ ଭିନ୍ନ ଭଙ୍ଗିରେ ପୁନରାବୃତ୍ତି କରନ୍ତି 'ଆକାର ଇଙ୍ଗିତରେ, ଚାହାଣୀରେ, କଣ୍ଠସ୍ୱରରେ— କେତେବେଳେ ଅପମାନ, କେତେବେଳେ ଦ୍ୱେଷ, ଉଗ୍ରତା ସହିତ ମିଶ୍ରିତ ହୋଇ, କେତେବେଳେ ମୁଷ୍ଟ୍ୟାଘାତ କରି, କେତେବେଳେ ତାହାକୁ ଦାସ ରୂପେ ପ୍ରହାର କରି !" ଏହି ଭଳି ଉପାୟରେ ବକ୍ତା ମେଇଦିଆସ୍‌ଙ୍କ କାର୍ଯ୍ୟକଳାପର ଅନୁକରଣ କରୁଥାନ୍ତି—ଏହା ଦ୍ୱାରା ସେ ବିଚାରପତିମାନଙ୍କ ମନରେ ଗୋଟିକ ପରେ ଗୋଟିଏ ଆଘାତ ଦେଇ ଚାଲିଥାନ୍ତି । ଏହାର ଅବ୍ୟବହିତ ପରେ ପ୍ରବଳ ପ୍ରଭଂଜନ ଭଳି ସେ ଆଉ ଏକ ସଦ୍ୟ ଆକ୍ରମଣ ଆରମ୍ଭ କରିଦେଲେ ମୁଷ୍ଟ୍ୟାଘାତ ପାଇ ସାରିବା ପରେ, ମୁଖରେ ଆଘାତ ପାଇ ସାରିବା ପରେ, ଏଥିରେ ଯେ କେହି ତାତି ଉଠିବ, ଅତ୍ୟାଚାରକୁ ବରଦାସ୍ତ କରିବାରେ ଅଭ୍ୟସ୍ତ ହୋଇ ନଥିଲେ ଏଥିରେ ଯେ କୌଣସି ଲୋକ

ଉତ୍‌କ୍ଷିପ୍ତ ହୋଇ ଉଠିବ ; ଏଥିରେ ଥିବା ଉକ୍ତତାକୁ ଶ୍ରୋତାମାନଙ୍କର ହୃଦ୍‌ବୋଧ ହେଲାଭଳି କେହି ବର୍ଣ୍ଣନା କରି ପାରିବେ ନାହିଁ ।' ତୁମେ ଦେଖ, କ୍ରମାଗତ ରୂପ-ପରିବର୍ତ୍ତନ କରି ମଧ୍ୟ ସେ କପରି ଉକ୍ତ ଭଗ୍ନ ବାକ୍ୟାଂଶ ତଥା ଧ୍ୱନିପ୍ରବୃତ୍ତି ଗୁଡ଼ିକର ଅନ୍ତର୍ନିହିତ ଶକ୍ତି ଅକ୍ଷୁର୍ଣ୍ଣ ରଖି ପାରିଛନ୍ତି । ତେଣୁ ତାଙ୍କର ଶୃଙ୍ଖଳା ପ୍ରତୀତ ହେଉଛି ବିଶୃଙ୍ଖଳ ଭଳି ଆଉ ଅନ୍ୟ ପକ୍ଷରେ ତାଙ୍କର ବିଶୃଙ୍ଖଳାରେ ରହିଛି ଶୃଙ୍ଖଳାର ଏକ ନିର୍ଦ୍ଦିଷ୍ଟ ଛନ୍ଦ ।



ମନେକର, ଆମେ ଇସୋକ୍ରେଟେସ୍ ଓ ତାଙ୍କ ଗୋଷ୍ଠୀର ଙ୍ଗରେ ଏହା ସହିତ ସଂଯୋଜକ ପଦ ଯୋଗ କଲେ :—"ଏତଦ୍‌ଭିନ୍ନ, ମୁଁ ଉଲ୍ଲେଖ କରିବାକୁ ଭୁଲିବି ନାହିଁ ଯେ ଯେଉଁ ଲୋକ ପ୍ରହାର କରେ ସେ ନାନା ଭାବେ ପୀଡ଼ନ କରିପାରେ, ପ୍ରଥମତଃ ଆକାର ଇଙ୍ଗିତରେ, ଦ୍ୱିତୀୟତଃ ଚାହାଣୀରେ, ତୃତୀୟତଃ ଓ ଶେଷତଃ ତାହାର କଣ୍ଠ ସ୍ୱରରେ ।" ତର୍କସମ୍ମତ ପର୍ଯ୍ୟାୟକ୍ରମେ ବିନ୍ୟସ୍ତ ଏହି ବାକ୍ୟଗୁଡ଼ିକ ସହିତ ତୁମେ ଯଦି ମେଇଦିଅସ୍‌ଙ୍କ ଅଭିବ୍ୟକ୍ତିକୁ ତୁଳନା କର, ଦେଖିବ, ଏହି ଭଳି ସଂଯୋଜକ ପଦଗୁଡ଼ିକର ପ୍ରୟୋଗ ଦ୍ୱାରା ସେ ସମସ୍ତ ବାକ୍ୟ ସରଳ ହୋଇ ଯାଇଛି, ଆବେଗର କ୍ଷିପ୍ରତା ଓ ବନ୍ଧୁର ଆକସ୍ମିକ ଭଙ୍ଗୀ ମସୃଣିତ ତଥା ସମଗ୍ର ଅଂଶରେ ଉଦ୍ଦେଶ୍ୟ ଓ ଉତ୍ତାପ ସାଙ୍ଗେ ସାଙ୍ଗେ ଉଭେଇ ଯିବ । କାରଣ ତୁମେ ଯଦି ଦୁଇଜଣ ଦୌଡ଼ ପ୍ରତିଯୋଗୀଙ୍କୁ ଏକତ୍ର ବାନ୍ଧି ଦେବ, ତେବେ ସେ ଦୁହେଁ ଅବିଳମ୍ବେ ଗତିର ସ୍ୱାଧୀନତା ହରାଇ ବସିବେ, ଠିକ୍ ସେହିପରି ସଂଯୋଜକ ପଦାବଳୀ ଓ ଅନ୍ୟାନ୍ୟ ଉପସର୍ଗ ପ୍ରତ୍ୟୟ ଆଦିର ବନ୍ଧନ ବିରୁଦ୍ଧରେ ଆବେଗ ବିଦ୍ରୋହୀ ହୋଇ ଉଠେ, କାରଣ ସେଗୁଡ଼ିକ ତାହାର ସ୍ୱାଧୀନ ପ୍ରବାହକୁ ରୁଦ୍ଧ କରି ସ୍ୱତଃ-ପ୍ରେରଣାର ପ୍ରଭାବକୁ ନଷ୍ଟ କରି ଦିଅନ୍ତି ।

## ୨୨

ବର୍ପର୍ଯ୍ୟ ବା ବ୍ୟତିକ୍ରମ ଅଳଙ୍କାର ମଧ୍ୟ ଏହି ଶ୍ରେଣୀର ଅନ୍ତର୍ଗତ । ବର୍ପର୍ଯ୍ୟର ଅର୍ଥ ହେଲା, ଶବ୍ଦ ଓ ଭାବନାବଳିର ସାଧାରଣ ଶୃଙ୍ଖଳାର ସ୍ଥାନାନ୍ତରୀକରଣ, ଏଥିରେ ପ୍ରବଳ ମାନସିକ ଗୁଞ୍ଜଲ୍ୟର ବିଶିଷ୍ଟ ମୁଦ୍ରା ଅଭ୍ରାନ୍ତ ଭାବେ ନିହିତ ହୋଇଥାଏ । ବାସ୍ତବ ଜୀବନରେ ଆମେ ଅନେକ ସମୟରେ ଦେଖୁ ଯେ ମନୁଷ୍ୟ କୋପ, ଭୟ, ଘୃଣା ଅଥବା ଦ୍ଵେଷ କମ୍ବା ମାନବୀୟ ଆବେଗର ଅସଂଖ୍ୟ ତାଲିକାଭୁକ୍ତ ଅନ୍ୟ କେତେକ ଆବେଗର ଅଧୀନ ହୋଇ ଗୋଟିଏ ବାକ୍ୟ ଆରମ୍ଭ କରେ, ଆଉ ତାପରେ କୌଣସି ଅସଲଗ୍ନ ବାକ୍ୟ ଆଡ଼କୁ ଗତି କରି ଲାଗେ, ତା'ପରେ ପୁଣି ଯନ୍ତ୍ରଣାରେ ତାଡ଼ିତ ହୋଇ ଖୁବ୍ ଜୋରରେ ନିଜର ମୁଖ୍ୟ ବିବୃତି ପ୍ରତି ଫେରି ଆସେ—ଇତସ୍ତତଃ ପ୍ରବାହିତ ପବନ ଭଳି, କେତେବେଳେ ଏ ଦିଗରେ ଆଉ କେତେବେଳେ ଅନ୍ୟ ଦିଗରେ ଗତି କରି ସେ ନିଜର ଶବ୍ଦାବଳୀ, ଭାବନା ସମୂହ ଓ ନିଜ ଭାଷାର ସ୍ଵାଭାବିକ ଶୃଙ୍ଖଳାରେ ନାନା ଭାବେ ଚଞ୍ଚଳ ପରିବର୍ତ୍ତନ ସଙ୍ଘଟିତ କରିଥାଏ । ସେହିପରି ଶ୍ରେଷ୍ଠ ଲେଖକମାନେ ବର୍ପର୍ଯ୍ୟ ଅଳଂକାର ମାଧ୍ୟମରେ ଏବଂବିଧ ସ୍ଵାଭାବିକ ହୃଦୟୋଚ୍ଛ୍ୱାସର ଚିହ୍ନଗୁଡ଼ିକୁ ଅନୁକରଣ କରି ପ୍ରୟୋଗ କରିଥାନ୍ତି । କାରଣ କଳା ସେତିକବେଳେ ସର୍ବାଙ୍ଗ ସୁନ୍ଦର ହୁଏ, ଯେତେବେଳେ ତାହା ପ୍ରକୃତି ଭଳି ପ୍ରଜ୍ଞାୟମାନ ହୁଏ ଏବଂ ପ୍ରକୃତି ଯେତେବେଳେ କଳାର ଅଦୃଶ୍ୟ ସତ୍ତା ଦ୍ଵାରା ବ୍ୟାପ୍ତ ହୁଏ ସେତେବେଳେ ହୁଏ ସର୍ବାଧିକ ହୃଦୟଗ୍ରାହୀ । ଏହାର ଦୃଷ୍ଟାନ୍ତ ହେରୋଡୋଟସ୍‌ଙ୍କ ରଚନାରେ ଫୋକାଇଆର ଦାଇଓନିସିଅସ୍‌ଙ୍କ ଭାଷଣରୁ ମିଳିଥାଏ "ଆମର ଅଦୃଷ୍ଟ ଏବେ ଛୁରୀର ଧାରରେ ଝୁଲୁଛି, ଆଇଓନିୟା ଅଧିବାସୀଗଣ ! ଆମେ ମୁକ୍ତ ମାନବ ଭଳି କମ୍ବା ଦାସ ଭଳି – ହଁ, ପଳାତକ ଦାସ ଭଳି ବଞ୍ଚିବା—ଏ ଦୁଇଟି କଥା ଆମର ବିଚାର୍ଯ୍ୟ । ତେଣୁ ବର୍ତ୍ତମାନ ତୁମ୍ଭେମାନେ ଯଦି ସାମାନ୍ୟ କଷ୍ଟ ସ୍ଵୀକାର କରିବାକୁ ପ୍ରସ୍ତୁତ, ତେବେ ତୁମ୍ଭ-

ମାନଙ୍କର ବର୍ତ୍ତମାନର ସାମାନ୍ୟ ଉଦ୍ୟମର ଫଳ ସ୍ୱରୂପ ଶତ୍ରୁଙ୍କୁ ପରାସ୍ତ କରିବାକୁ ସମର୍ଥ ହେବ ।" ଏହି ଉକ୍ତିର ବିଧିସମ୍ମତ ପର୍ଯ୍ୟାୟକ୍ରମ ଏହି ଭଳି ହୋଇଥାନ୍ତା । "ଆଥେନ୍ସୀୟ ଅଧିବାସୀଗଣ ! ବର୍ତ୍ତମାନହିଁ ତୁମ୍ଭମାନଙ୍କର ସାମାନ୍ୟ କଷ୍ଟ ସ୍ୱୀକାର କରିବାର ସମୟ ; କାରଣ ଆମର ଅଦୃଷ୍ଟ ଖଡ୍ଗ ଅସୀଧାରରେ ଏବେ ଝୁଲି ରହିଛି ।" ଏ ସ୍ଥାନରେ ବକ୍ତା "ଆଥେନ୍ସୀୟ ଅଧିବାସୀଗଣ" ସମ୍ବୋଧନକୁ ସ୍ଥାନାନ୍ତରିତ କରିଛନ୍ତି, ସେ ହଠାତ୍ ଆତଙ୍କିତ ବକ୍ଷପୂରୁ କହିବାକୁ ଆରମ୍ଭ କରିଛନ୍ତି, ସତେ କି ସଙ୍କଟ କାଳରେ ତାଙ୍କର ଶ୍ରୋତାମାନଙ୍କୁ ଯେପରି ସମ୍ବୋଧନ କରିବା କଥା ତାହା ସେ ଭୁଲି ଯାଇଛନ୍ତି । ଏତଦ୍‌ବ୍ୟତୀତ, ସେ ତାଙ୍କର ଭାବନାର ନ୍ୟାୟସଙ୍ଗତ କ୍ରମକୁ ମଧ୍ୟ ବିପର୍ଯ୍ୟସ୍ତ କରିଛନ୍ତି ଏବଂ ଯେଉଁ କଥା କହି ସେ ସେମାନଙ୍କୁ ପ୍ରେରଣା ଦେବାକୁ ଚାହାନ୍ତି ସେଇ ଉଦ୍ୟମର ଆବଶ୍ୟକତା ଠାରୁ ଆରମ୍ଭ ନ କରି ସେ ସେଇ ଆବଶ୍ୟକତା ସମ୍ବନ୍ଧରେ ସେମାନଙ୍କୁ ପ୍ରଥମେ କାରଣ ଦର୍ଶାଇଛନ୍ତି । ସେ ଏହିପରି ଭାଷାରେ କାରଣ ଦର୍ଶାଇଛନ୍ତି :—"ଆମର ଅଦୃଷ୍ଟ ଏବେ ଖଡ୍ଗ ଅସୀଧାରରେ ଝୁଲୁଛି ।" ସେଥିପାଇଁ ତାଙ୍କର ବକ୍ତବ୍ୟ ଅଚିନ୍ତିତପୂର୍ବ ଓ ସଙ୍କଟ ସମୟରେ ତାଙ୍କ ଉପରେ ବଳପୂର୍ବକ ଲଦି ଦିଆଗଲା ଭଳି ଜଣା ପଡୁଛି ।

ଏହି ଅଳଙ୍କାର ପ୍ରୟୋଗରେ ଥୁକିଦିଦେସ୍ ଅନ୍ୟ ସମସ୍ତ ଲେଖକଙ୍କୁ ଅତିକ୍ରମ କରି ଯାଇଛନ୍ତି, ଏପରିକି ସେ ସ୍ୱଭାବତଃ ସମ୍ପୂର୍ଣ୍ଣ ଏକ ଓ ଅଖଣ୍ଡ ବାକ୍ୟ ଗୁଡ଼ିକୁ ଖୁବ୍ ସାହସ ସହକାରେ ଖଣ୍ଡ ଖଣ୍ଡ କରି ପ୍ରୟୋଗ କରିଛନ୍ତି । ଦେମୋସ୍ଥେନେସ୍ ଥୁକିଦିଦେସଙ୍କ ଭଳି ଏହି ଅଳଙ୍କାରର ଏତେ ନିର୍ଭୀକ ପ୍ରୟୋଗ କରି ନଥିଲେ ମଧ୍ୟ ଏହାର ଯେତେ ଅଧିକ ପ୍ରୟୋଗ କରିଛନ୍ତି ତାହା ଆମେ ଅନ୍ୟ କୁତ୍ରାପି ପାଇ ନ ଥାଉ । ସେ ଘନ ଘନ ବିପର୍ଯ୍ୟୟ ପ୍ରୟୋଗ ଦ୍ୱାରା ନିଜ ଭାଷଣରେ ଅପ୍ରସ୍ତୁତ ତର୍କ ବିତର୍କର ଜୀବନ୍ତ ପ୍ରାଣମୟତା ଆନୟନ କରିବାରେ ଦକ୍ଷ । ଏହା ବ୍ୟତୀତ ସେ ନିଜ ସହିତ ଶ୍ରୋତାମାନଙ୍କୁ ଘର୍ଷ

ବିପର୍ଯ୍ୟସ୍ତ ଖଣ୍ଡବାକ୍ୟର ସଙ୍କଟ ଭିତରକୁ ଟାଣି ନଅନ୍ତି । ସେ ସର୍ବଦା କିଛି ଗୋଟାଏ କହିବାକୁ ଆରମ୍ଭ କରନ୍ତି, ତା'ପରେ ସେଇ ଭାବନାକୁ ଅନିଶ୍ଚିତ ଅବସ୍ଥାରେ ଛାଡ଼ି ଦିଅନ୍ତି, ଏଇ ଅବସ୍ଥାରେ ଆପାତତଃ ବାହ୍ୟ ଓ ଅସ୍ୱାଭାବିକ ପ୍ରତୀତ ହେଉଥିବା କେତେକ ଅପ୍ରଧାନ ବିଷୟକୁ ବାକ୍ୟ ମଧ୍ୟରେ ଗୋଟିକ ପରେ ଗୋଟିଏ ବଳାତ୍କାର ଲଦି ଦିଅନ୍ତି । ଏଥିରେ ଶ୍ରୋତାମାନେ ଭୟ କରିବାକୁ ଲାଗନ୍ତି କାଳେ ସମସ୍ତ ଆଲୋଚନା ବ୍ୟାହତ ହେବ ଓ ବକ୍ତାଙ୍କର ବିପଦ ସହ ସେମାନେ ଉତ୍କଣ୍ଠିତ ସମବେଦନା ପ୍ରାଇଁ ବାଧ୍ୟ ହେବେ । ପୁନଶ୍ଚ ସେ ଯେତେବେଳେ ପ୍ରାୟ ଶେଷାଂଶରେ ଆସି ପହଞ୍ଚି ଗଲେଣି ସେଇ ସ୍ଥାନରେ ଠିକଣା ମୁହୂର୍ତ୍ତରେ, ଅର୍ଥାତ୍, ଯେତେବେଳେ ତାହା ନିହାତି ଅପ୍ରତ୍ୟାଶିତ, ସେମାନଙ୍କର ଘର୍ଯ ପ୍ରତୀକ୍ଷିତ ବିଷୟଟିକୁ ଯୋଗ କରି ଦିଅନ୍ତି । ଏହିଭଳି ସେ ଅତ୍ୟନ୍ତ ସାହସିକ ଓ ଆକସ୍ମିକ ବିପର୍ଯ୍ୟୟ ପ୍ରୟୋଗ ଦ୍ୱାରା ଅତୀବ ବିସ୍ମୟକର ପ୍ରଭାବ ସୃଷ୍ଟି କରିଥାନ୍ତି । ଏହାର ସଂଖ୍ୟା ଏତେ ଅଧିକ ଯେ, ଆବଶ୍ୟକ ନଥିବାରୁ ମୁଁ ଉଦାହରଣ ଦେବାରୁ ବିରତ ହେଉଛି ।

୨୩

ତୁମେ ଜାଣିଛ, ବିଭିନ୍ନ ଘଟଣାବଳୀର ସାମୀପ୍ୟ, ବିଶେଷର ସଂଖ୍ୟା ନିର୍ଦ୍ଦେଶ ଓ ବୈଷମ୍ୟ ତଥା ଉତ୍କର୍ଷସୂଚକ ଅଳଙ୍କାର ଶୈଳୀରେ ଅଧିକ ଶକ୍ତି ସଞ୍ଚାର କରି ତାହାକୁ ସୌନ୍ଦର୍ଯ୍ୟ, ମହତ୍ ମର୍ଯ୍ୟାଦା ଓ ଜୀବନ ପ୍ରଦାନ କରିଥାଏ । ରଚନାଭଙ୍ଗୀ ମଧ୍ୟ କାରକ, କାଳ, କର୍ତ୍ତା, ବଚନ ଓ ଲିଙ୍ଗ ପରିବର୍ତ୍ତନ ଦ୍ୱାରା ବିଶେଷଭାବେ ବୈଚିତ୍ର୍ୟ ଓ ତେଜ ଲାଭ କରିଥାଏ ।

ବଚନ ପରିବର୍ତ୍ତନ ସମ୍ବନ୍ଧରେ ଏହା କୁହାଯାଇପାରେ ଯେ, ଶୈଳୀ କେବଳ ସେହି ଶବ୍ଦାବଳୀ ପ୍ରୟୋଗ ଦ୍ୱାରା ସମୃଦ୍ଧ ହୁଏ ନାହିଁ ଯାହା ରୂପ

ଦୃଷ୍ଟିରୁ ଏକବଚନ ହେଲେ ମଧ ଅର୍ଥ ଦୃଷ୍ଟିରୁ ପରୀକ୍ଷା କଲେ ବହୁବଚନ ହେବା ଦେଖିବାକୁ ମିଳେ ।

ଯଥା :—

ସିନ୍ଧୁ-ସୈକତରେ ବିକ୍ଷିପ୍ତ ଭାବେ ଅପ୍ରମିତ ଜନସଂଘ
ଆନନ୍ଦୋଦ୍‌ବେଳିତ ଧ୍ୱନିରେ ସିନ୍ଧୁ ମଧ୍ୟେ

ସାମୁଦ୍ରିକ ମହ୍ର୍ୟର ଶୂନ୍ୟ ସ୍ଥାନକୁ ଅଭିବାଦନ କଲି । କିନ୍ତୁ ଏଠାରେ ବିଶେଷ ମନୋଯୋଗ ଦେବାର କଥା ଯେ ବେଳେ ବେଳେ ଏକ ବଚନ ପାଇଁ ବହୁ ବଚନର ପ୍ରୟୋଗ ସଂଖ୍ୟାବାହୁଲ୍ୟର ସାମାନ୍ୟ ଆଭାସ ଦ୍ୱାରା କଳ୍ପନାକୁ ଜାଗ୍ରତ କରି ଅଧିକ ହୃଦୟଗ୍ରାହୀ ମର୍ଯ୍ୟାଦା ସହ ଦେଖା ଦିଏ । ସଫୋକ୍ଲିସ୍‌ଙ୍କ ଅଡ଼ିପସ୍‌ର ବାକ୍ୟରେ ସେଇ ପ୍ରଭାବ ଦେଖାଯାଏ –

ଅହୋଃ, ମାତମ୍ବକ, ବିଧିନିର୍ଦ୍ଦିଷ୍ଟ ବନ୍ଧନ !
ଆମକୁ ତୁମେ ଜନ୍ମ ଦେଇଛ, ଆଉ ଆମେ ଜନ୍ମ ହେବାରୁ
ସେଇ ବୀଜକୁ ତୁମେ କରିଲ ବପନ, ଆଉ ଦେଖାଇଲ
ବିଶ୍ୱ ସମକ୍ଷରେ
ପୁତ୍ର, ଭ୍ରାତା, ଜନକ, କଳୁଷିତ ସାଂସାରିକ ହତ୍ୟା,
ନବବଧୂ, ଜନନୀ, ପତ୍ନୀ....ହାୟ, ତୁମେ
ଅନାବୃତ କରି ଥୋଇଛ ଘନ ଅନ୍ଧାରିତ
ସତର୍କ ଦର୍ଶନ ସ୍ଥାନ, ଲଜ୍ଜା ଯହିଁ କରେ ଅବସ୍ଥାନ ।

ଏଠାରେ ଆମେ ଉଭୟ କ୍ଷେତ୍ରରେ ଜଣେ ମାତ୍ର ବ୍ୟକ୍ତିକୁ ଭେଟୁ । ପ୍ରଥମେ ଅଡ଼ିପସ୍, ତାପରେ ଜୋକାଷ୍ଟା ; ମାତ୍ର ବହୁବଚନର ବଚନ-ବିସ୍ତାର ଦୁର୍ଗତିର ଆଧିକ୍ୟ ସମ୍ବନ୍ଧରେ ଧାରଣା ଦେଉଛି । ସେହିପରି ନିମ୍ନୋକ୍ତ ବହୁବଚନ ସୂଚକ ପଂକ୍ତିରେ ମଧ—

ସେଠାରେ ହେକ୍‌ଟର ହେଲା ଉପସ୍ଥିତ

ଆଉ ସେଠାରେ ଦେଖାଯାଉ ସେରଦେଦନ । ଆଉ ମଧ୍ୟ ଏଥେନୀୟ-ମାନଙ୍କୁ ଲକ୍ଷ୍ୟ କରି ପ୍ଲେଟୋ କହିଥିବା ବାକ୍ୟାବଳୀରେ (ଯାହା ଆମେ ଅନ୍ୟତ୍ର ଉଲ୍ଲେଖ କରି ସାରିଛନ୍ତି) ଏହି କଥା ମିଳିଥାଏ "ଆମ ଭିତରେ କୌଣସି ପେଲୋପ୍‌ସ୍ କିମ୍ବା କାଡ଼ମସ୍, କୌଣସି ଏଗପ୍ଟସ୍ ବା ଦନାସ୍ କିମ୍ବା ବିଦେଶୀ ବର୍ବର ଜନସମୁଦାୟ ମଧ୍ୟରୁ ଅନ୍ୟ କେହି ବାସ କରୁନାହାନ୍ତି ; ନାଁ, ଏହା ବିଶୁଦ୍ଧ ଗ୍ରୀକ୍‌ମାନଙ୍କର ଭୂମି, ଏଥିରେ କୌଣସି ବିଦେଶୀ ଉପା-ଦାନର ମିଶ୍ରଣ ନାହିଁ" ଇତ୍ୟାଦି । ବହୁ ବଚନରେ ନାମାବଳୀର ଏତାଦୃଶ ସଞ୍ଚୟନ ନିଶ୍ଚିତ ରୂପେ ବିଷୟକୁ ଅଧିକ ଆଡ଼ମ୍ବର ଓ ରବ ପ୍ରଦାନ କରେ । କିନ୍ତୁ ଆମେ କେବଳ ସେତିକବେଳେ ଏହି ଉପାୟ ଅବଲମ୍ବନ କରିବା, ଯେତେବେଳେ, ଆମର ବିଷୟର ପ୍ରକୃତି ଆମକୁ ବିସ୍ତାରଣା କରିବାକୁ ସଂଖ୍ୟା ବୃଦ୍ଧି କରିବାକୁ କିମ୍ବା ଅତିଶୟୋକ୍ତି ବା ଆବେଗ କଥନ ନିମନ୍ତେ ସୁଯୋଗ ଦେବ । ପ୍ରତ୍ୟେକ ବାକ୍ୟକୁ ଅଳଙ୍କାରମଣ୍ଡିତ କରିବା ନିତାନ୍ତ ପାଣ୍ଡିତ୍ୟ ସର୍ବସ୍ୱ ।

## ୨୪

ଅନ୍ୟ ପକ୍ଷରେ, ବହୁବଚନକୁ ଏକ ବଚନରେ ସଂକ୍ଷିପ୍ତ କରି ପ୍ରକାଶ କରିବା ଦ୍ୱାରା ବେଳେ ବେଳେ ଖୁବ୍ ଗରିମାର ଆଭାଷ ମିଳିଥାଏ, ଯଥା, ଡେମୋସ୍ଥେନେସ୍‌ଙ୍କ ବାକ୍ୟାଂଶରେ—"ତା'ପରେ ପରେ ସମଗ୍ର ପେଲୋ-ପୋନେସସ୍ ଦ୍ୱିଧା ବିଭକ୍ତ ହୋଇଗଲା ।" ହେରୋଦତସ୍‌ଙ୍କ ରଚନାରେ ଆଉ ଗୋଟିଏ ଉଦାହରଣ ମିଳେ—"ଯେତେବେଳେ ଫ୍ରିନିଖସ୍ "ମିଲେତୁସ୍-ପରାଜୟ" ନାମକ ନାଟକ ମଞ୍ଚାଭିନୟ ନିମନ୍ତେ ଉପସ୍ଥାପିତ କରିଥିଲେ, ସେତେବେଳେ "ସମଗ୍ର ଶ୍ରୋତୃମଣ୍ଡଳୀ" ପରିବର୍ତ୍ତେ ସମଗ୍ର ପ୍ରେକ୍ଷାଗୃହ କ୍ରନ୍ଦନ କରିବାକୁ ଲାଗିଥିଲା ।" ବହୁ ଗୁଡ଼ିଏ ବିକ୍ଷିପ୍ତ ବିଷୟକୁ ଏକ ଅଖଣ୍ଡ ଆକାର

ଦେଇ ଦେବା ଦ୍ୱାରା ସେଗୁଡ଼ିକର ଏକ ସ୍ୱତନ୍ତ୍ରଜୀବନ ପ୍ରକାଶ ପାଉଛି । ମୋର ମତରେ ଏ, ଏଇ ଉଭୟ ବିଧ ପ୍ରୟୋଗର ସୌନ୍ଦର୍ଯ୍ୟ ସେମାନଙ୍କର ସ୍ଫୁରିତ ଆବେଗରେ ନିହିତ—ଯେଉଁଠି ଶବ୍ଦ ପୂର୍ବରୁ ଏକ ବଚନ ଥାଏ ତାହାକୁ ଅପ୍ରତ୍ୟାଶିତ ଭାବେ ବହୁବଚନରେ ପରିବର୍ତ୍ତିତ କରି ଦିଆଗଲେ କିମ୍ବା କେତେ ଗୁଡ଼ିଏ ବିଚ୍ଛିନ୍ନ ଏକକ ବସ୍ତୁମାନଙ୍କୁ ଏକମାତ୍ର ଧ୍ୱନାତ୍ମକ ଶବ୍ଦ ଜରିଆରେ ମିଳିତ କରି ପ୍ରୟୋଗ କରାଗଲେ—ଚଳିଷ୍ଣୁ ଦୃଷ୍ଟିରୁ ସହସା ଆକାର ପ୍ରକାରରେ ପରିବର୍ତ୍ତନ ଘଟାଇବା ହେତୁ ଆଶ୍ଚର୍ଯ୍ୟ ଉତ୍ପନ୍ନ ହୋଇଥାଏ ।



ଯଦି ଅତୀତ ଘଟଣାଗୁଡ଼ିକୁ ବର୍ତ୍ତମାନ କାଳରେ ଘଟୁଥିବା ଘଟଣା-ଭଳି ପ୍ରବର୍ତ୍ତିତ କରାଯାଏ ତେବେ ଆଖ୍ୟାନରୂପ ନାଟକୀୟ ଘଟଣାରେ ରୂପା-ନ୍ତରିତ ହୋଇଯାଏ । ଜେନୋଫୋନଙ୍କ ବର୍ଣ୍ଣନାରେ ତାହାହିଁ ହୋଇଛି— "କ୍ୟୁରସ୍‌ର ଘୋଡ଼ା ପାଦ ତଳେ ପଡ଼ି ଯାଇଥିବା ଜଣେ ଲୋକକୁ ଦଳି ମକଚି ଦେବାକୁ ଯିବାରୁ ସେ ନିଜର ବଙ୍କା ତରବାରୀରେ ତାହାର ପେଟକୁ ଭୁଷି ଦେଲା ; ଘୋଡ଼ାଟା ପଛ ଗୋଡ଼ରେ ଠିଆ ହୋଇ ଯିବାରୁ କ୍ୟୁରସ୍ ଘୋଡ଼ା ପିଠିରୁ ଖସି ତଳେ ପଡ଼ିଗଲା ।" ଥୁକାଇଦେସ୍‌ଙ୍କ ରଚନାରେ ଏତାଦୃଶ ତତ୍ତ୍ୱ ଭୂରି ଭୂରି ରହିଛି ।



ପୁରୁଷର ପରିବର୍ତ୍ତନ ମଧ୍ୟ ସମାନ ନାଟକୀୟ ପ୍ରଭାବ ଜାତ କରେ ଆଉ ସବୁବେଳେ ଶ୍ରୋତା ନିଜେ ଅନୁମାନ କରି ନିଅନ୍ତି ସେ ଯେପରି ବର୍ଣ୍ଣିତ ସଙ୍କଟସମୂହ ମଧ୍ୟରେ ଗତି କରୁଛନ୍ତି

ତୁମେ ମନେକର ପାର, ଅକ୍ଲାନ୍ତ ଶରୀର ଓ ସଞ୍ଚିତ ଶକ୍ତି ନେଇ ସେମାନେ ଯୁଦ୍ଧରେ ପ୍ରବୃତ୍ତ ହେଲେ ଏହାପରେ କ୍ରୋଧୋନ୍ମାଦରୂପେ ସେମାନେ ସଂଗ୍ରାମ କଲେ ।'

ଧ୍ୟାନସ୍ଥ ଅରୁତୁସ୍ଙ୍କ ଏହି ପଂକ୍ତି :—

ତରଙ୍ଗିତ ସିନ୍ଧୁକୁ ପ୍ରଲୁବ୍ଧ କରୁଥିବା ସେହି ମାସ ପ୍ରତି ସାବଧାନ । ହେରୋଡୋଟସ ମଧ୍ୟ ସେହି ରୀତିରେ କହୁଛନ୍ତି —"ଏଲିଫାଣ୍ଟାଇନ୍ ସହରରୁ ବାହାରି ତୁମେ ସମତଳ ଅଞ୍ଚଳରେ ପହଞ୍ଚିବା ଯାଏ ଉପର ଆଡ଼କୁ ଯାତ୍ରା କରିବ । ତୁମେ ଏହି ଅଞ୍ଚଳ ଅତିକ୍ରମ କରିବା ପରେ ସେଠାରୁ ଆଉ ଗୋଟିଏ ଜାହାଜରେ ଚଢ଼ି ଦୁଇଦିନ ଯାତ୍ରା କରିବ ଏବଂ ତା'ପରେ ଗୋଟିଏ ବଡ଼ ସହରରେ ପହଞ୍ଚିବ, ଯାହାର ନାମ ହେଉଛି ମେରୋଏ ।" ଲକ୍ଷ୍ୟକର, ସେ କିପରି ଆମର ହାତଧରି ସତେ ଯେପରି କଳ୍ପନା ବଳରେ ଏହି ସ୍ଥାନଗୁଡ଼ିକ ମଧ୍ୟ ଦେଇ ଆମ୍ଭମାନଙ୍କୁ ନେଇ ଚାଲିଛନ୍ତି ଓ ଆମେ ଯେପରି ଆଉ ପାଠକ ନାହାନ୍ତି, ସ୍ୱୟଂ ଦର୍ଶକରେ ପରିଣତ ହୋଇ ଯାଇଛନ୍ତି । ଏହିପରି ପ୍ରତ୍ୟକ୍ଷ ବ୍ୟକ୍ତିଗତ ସମ୍ବୋଧନ ହେତୁ ପାଠକ ନିଜେ ଘଟଣାର ମଧ୍ୟବର୍ତ୍ତୀ ସ୍ଥଳରେ ଉପସ୍ଥିତ ଥିବା ଭଳି ମନେ କରେ । ତା'ଛଡ଼ା ତୁମେ ଯେତେବେଳେ ସମଷ୍ଟିଗତ ପାଠକମାନଙ୍କ ପ୍ରତି ନୁହେଁ, କୌଣସି ଜଣେ ପାଠକ ପ୍ରତି ନିଜର କଥାଗୁଡ଼ିକୁ ଉଦ୍ଦେଶ୍ୟ କରି କହୁଥାଅ, ଯଥା ଏହି ପଂକ୍ତିରେ—

"ତୁମେ ଜାଣି ନ ଥିବ କାହା ପାଇଁ ଲଢ଼ିଥିଲ ତାଇଦେସେସ୍"

ଆଉ ତୁମର ଶ୍ରୋତାକୁ ବ୍ୟକ୍ତିଗତ ରୂପେ ସମ୍ବୋଧନ କରି ଉତ୍ତେଜିତ କରିପାରିଲେ ତଥା ତା'ଠାରେ ଆଗ୍ରହ ସୃଷ୍ଟି କରିପାରିଲେ ତାହାକୁ ନିବିଷ୍ଟଚିତ୍ତ କରାଇ ବର୍ଣ୍ଣନୀୟ ଘଟଣାରେ ଜଣେ ଅଂଶୀଦାର କରାଇ ପାରିବ ।

୨୭

ପୁନଶ୍ଚ ଏହା ମଧ୍ୟ ବେଳେବେଳେ ହୋଇଥାଏ ଯେ ଲେଖକ ଆଖ୍ୟାନର ମଧ୍ୟ ଭାଗରେ କୌଣସି ଅନ୍ୟ ବ୍ୟକ୍ତି ବିଷୟରେ କହୁଁ କହୁଁ ହଠାତ୍ କଥା ବଦଳାଇ ପ୍ରଥମ ପୁରୁଷଭଳି କଥା କହିବାକୁ ଲାଗନ୍ତି । ଏହା ଏପରି ଏକ ପ୍ରକାର ଅଳଙ୍କାର ଯାହା ଆବେଗର ଅତର୍କିତ ଉଚ୍ଛ୍ୱାସ ଭଳି ଚମକ ସୃଷ୍ଟି କରେ । ଇଲିଆଡ୍ କାବ୍ୟରେ ହେକ୍ଟରର ବାଣୀରେ ଏହାର ପ୍ରମାଣ ମିଳେ—

ଉଚ୍ଚସ୍ୱରେ ଟ୍ରୟ-ନଗରୀର ଜନତାରେ ଡ଼ାକି
କହିଲ ସେ, ରକ୍ତରଞ୍ଜିତ ଲୁଣ୍ଠିତ ସାମଗ୍ରୀ ଛାଡ଼ି
ପୋତପଂକ୍ତି ଆକ୍ରମିବା ପାଇଁ
ଯଦି ମୁଁ ଦେଖିବି କାହାରେ
ସ୍ୱଇଚ୍ଛାରେ ପୋତ ତ୍ୟାଗକରି, ସମତଳ ଭୂମେ
ବୃଥାକାଳ କ୍ଷେପିବାର,
ତତ୍କାଳ ହେବ ତା'ର ମୃତ୍ୟୁ ।

ଏଠାରେ କବି ତାଙ୍କର ମୁଖ୍ୟ କର୍ମରୂପେ ଆଖ୍ୟାନ ବର୍ଣ୍ଣନାର ଦାୟିତ୍ୱ ନିଜେ ବହନ କରିଛନ୍ତି; ମାତ୍ର କୌଣସି ସତର୍କବାଣୀ ନ ଶୁଣାଇ ଏହି ଆକସ୍ମିକ ଭୟପ୍ରଦର୍ଶନକୁ ସେ ଟ୍ରୟର କ୍ରୋଧାନ୍ୱିତ ନାୟକଠାରେ ଆରୋପ କରିଛନ୍ତି । ସେ ଯଦି ଏ ସ୍ଥଳରେ କହିଥାନ୍ତେ—"ହେକ୍ଟର ଏମିତି-ଏମିତି କହିଲେ", ତେବେ ସେକଥା ଗୁଡ଼ିକର ପ୍ରଭାବ ନିତାନ୍ତ ନୀରସ ହୋଇ ପଡ଼ିଥାନ୍ତା । ଏହି ପଂକ୍ତି-ଗୁଡ଼ିକରେ ପରିବର୍ତ୍ତନ ପାଇଁ ପ୍ରସ୍ତୁତ ହେବା ମାତ୍ରେ ପରିବର୍ତ୍ତନ ସଙ୍ଘଟିତ ହୋଇ ଲେଖକ ନିଜର ଶବ୍ଦାବଳୀ ଦ୍ୱାରା ଅଦ୍ଭୁତ ପଥରେ ପଡ଼ିଯାଇଛନ୍ତି । ଏଥିପାଇଁ ଉକ୍ତ ଅଳଙ୍କାରର ପ୍ରୟୋଗ ସେହି ସ୍ଥଳରେ ଯଥାର୍ଥ ହୁଏ ଯେଉଁଠାରେ

କୌଣସି ସହସା ସଙ୍ଘଟିତ ସଙ୍କଟ ଲେଖକଙ୍କୁ ବୃଥା କାଳକ୍ଷେପଣ କରିବାକୁ ଅବସର ଦିଏ ନାହିଁ ଓ ବଚନର ଦ୍ରୁତ ପରିବର୍ତ୍ତନ ପାଇଁ ତାଙ୍କୁ ବାଧ୍ୟକରେ । ହେକାଟେଉସ୍‌ଙ୍କ ରଚନାରେ ଏହାର ଏକ ଉଦାହରଣ ମିଳେ "ଏବେ କେଇକ୍‌ସ କ୍ରୋଧଭରେ ଏ ବିଷୟକୁ ଗ୍ରହଣ କଲେ ଓ ହେରାକ୍ଲିସ୍‌ର ସନ୍ତାନ-ମାନଙ୍କୁ ସହସା ପଳାୟନ ନିମନ୍ତେ ଆଦେଶ ଦେଲେ, 'ଦେଖ, ମୁଁ ତୁମ୍ଭମାନଙ୍କୁ କୌଣସି ପ୍ରକାର ସାହାଯ୍ୟ ଦେଇପାରିବି ନାହିଁ; କାଳେ ତୁମ୍ଭେମାନେ ବିନାଶ-ପ୍ରାପ୍ତ ହେବ ଓ ମୋ ପ୍ରତି ମଧ୍ୟ ବିପଦ ଟାଣି ଆଣିବ, ସେଥିପାଇଁ ଆଉ କେଉଁ ଅନ୍ୟ ଦେଶକୁ ଚାଲିଯାଅ ।" ବଚନ ପରିବର୍ତ୍ତନର ଆଉ ଏକ ଭିନ୍ନ ପ୍ରୟୋଗ ଆରିଷ୍ଟୋଗେଇଟୋନଙ୍କ ବିରୁଦ୍ଧରେ ଦେମୋସ୍ଥେନେସ୍‌ଙ୍କ ଭାଷଣରୁ ମିଳେ ଯେଉଁଥିରୁ ପ୍ରବଳ ଭାବନାସମୂହର ଘାତ ପ୍ରତିଘାତ ଆମ ଦୃଷ୍ଟିରେ ପଡ଼େ । ସେ ପଚାରୁଛନ୍ତି, "ତୁମ୍ଭମାନଙ୍କ ମଧ୍ୟରେ କ'ଣ ଏପରି କେହି ନାହିଁ ଯିଏ କି ଏଇ ଧୃଷ୍ଟ ନିର୍ଲଜ୍ଜ ମୂଢ଼ ବ୍ୟକ୍ତିର ଜଘନ୍ୟ କାର୍ଯ୍ୟରେ ଘୃଣା ଓ କ୍ରୋଧ ଅନୁଭବ କରୁନାହିଁ, ସେଇ ବ୍ୟକ୍ତି ଯେ— ରେ ନରାଧମ, ତୁ ଯେତେବେଳେ ବାକ୍-ସ୍ୱାଧୀନତାରୁ ବଞ୍ଚିତ, କୌଣସି ପ୍ରତିବନ୍ଧକ ବା ଅର୍ଗଳ-ବନ୍ଧ ଦ୍ୱାରା ନୁହେଁ, ଯାହାକୁ ଅନ୍ତରେ ଖୋଲି ଦିଆଯାଇ ପାରେ" ଇତ୍ୟାଦି । ଏହିପରି ଏକ ଅର୍ଦ୍ଧ-ଅଭିବ୍ୟକ୍ତ ଭାବନା ମଧ୍ୟରେ ସେ ତୁରନ୍ତ ନିଜର ବକ୍ତବ୍ୟକୁ ପରିବର୍ତ୍ତିତ କରିଦିଅନ୍ତି ଓ ସମ୍ପୂର୍ଣ୍ଣ କ୍ରୋଧର ବଶବର୍ତ୍ତୀ ହୋଇ ଏକ ପଦକୁ ଦୁଇଟି ସ୍ୱତନ୍ତ୍ର ପୁରୁଷ ରୂପରେ ଛିନ୍ନ କରିଦିଅନ୍ତି, "ସେଇ ଯେ—ରେ ନରାଧମ" ଇତ୍ୟାଦି । ଏହାପରେ ସେ ଯଦିଓ ଆରିଷ୍ଟୋଗେଇଟୋନଙ୍କ ପ୍ରତି ନିଜର ସମ୍ବୋଧନ ବନ୍ଦ କରିଦେଇଛନ୍ତି ତଥା ଏଥିରୁ ମନନିହିଏ ସେ ତାଙ୍କୁ ଛାଡ଼ି ଦେଇଛନ୍ତି ତଥାପି ତାଙ୍କର ଉଚ୍ଚାରଣରେ ଆବେଗ ଦ୍ୱାରା ବାଗ୍‌ବିଳାସର ଧ୍ୟାନ ଅଧିକ ମାତ୍ରାରେ ଆକୃଷ୍ଟ କରିପାରିଛନ୍ତି । ଏହିପରି ବିଚିତ୍ର ପେନେଲୋପର ଗୋଟିଏ ଉକ୍ତିରେ ଲକ୍ଷ୍ୟ କରାଯାଇପାରେ—

ହେ ମେଡନ, କାହିଁକି ଆସିଛ ତୁମେ ଉଦ୍ଧତ ପ୍ରଣୟୀ ଦଳୁ ?

ମୋ ସ୍ୱାମୀଙ୍କ ପରିଚର୍ଯ୍ୟରଗଣେ ଦେବାକୁ ଆଦେଶ
ସକଳ କର୍ତ୍ତବ୍ୟ କରି ପରିହାର, ରଚିବାକୁ ଉତ୍ତମ
ଭୋଜ୍ୟ ସେମାନଙ୍କ ପାଇଁ ?
ମୁଁ ଶୁଣେଁ ଏଠାରେ ସେମାନଙ୍କର ସମବେତ ହେବା ଓ
ପ୍ରତ୍ୟୁ ଯାଚନାର ଇଚ୍ଛ ହେଉ,
ଈଶ୍ୱର କରନ୍ତେ କି ଏଇଠି ଏଇ ମୁହୂର୍ତ୍ତରେ ସମସ୍ତେ
ଶେଷ ନିଶ୍ୱାସ ତ୍ୟାଗ କରନ୍ତେ
ଘଟନ୍ତା କି ସେମାନଙ୍କ ଭୋଜନର ଶେଷ ! ଦିନ ଦିନ ଧରି
ଯେଉଁମାନେ ଏଠାରେ ହୋଇ ଭୁଣ୍ଡୀଭୂତ ମୋ ପୁତ୍ରର
ସକଳ ପଦାର୍ଥ ଗ୍ରାସ କରୁଛ ଓ ଅପଚୟ କରୁଛ
ଶୈଶବରେ ପିତୃକୋଳେ କରିନା ଶ୍ରବଣ
ଭୂମ୍ଭ ନୃପତିଙ୍କ କୀର୍ତ୍ତି ଆଉ ବିକ୍ରମର ଗାଥା ?

୨୮

ପର୍ଯ୍ୟୋୟୋକ୍ତ ଅଳଙ୍କାର ଉଦାତ୍ତର ପ୍ରଭାବ ବୃଦ୍ଧିରେ ବିଶେଷ ସହାୟକ ହୁଏ ଏ ବିଷୟରେ କାହାରି ମତଭେଦ ନାହିଁ ବୋଲି ମୋର ବିଶ୍ୱାସ । କାରଣ ସଙ୍ଗୀତରେ ଯେପରି ସ୍ୱରସଙ୍ଗତ ସଂଯୋଗ ଦ୍ୱାରା ରାଗ ମଧୁରତର ହୋଇଉଠେ ଭାଷା କ୍ଷେତ୍ରରେ ସେହିପରି ପର୍ଯ୍ୟାୟୋକ୍ତ ସାଧାରଣ ଅଭିବ୍ୟକ୍ତ ସହିତ ସର୍ବଦା ସମନ୍ୱିତ ହୋଇଉଠେ ଏବଂ ତା ଦ୍ୱାରା ଅଭିବ୍ୟକ୍ତିର ସୌନ୍ଦର୍ଯ୍ୟ ଅଧିକ ବୃଦ୍ଧିପ୍ରାପ୍ତ ହୁଏ ; ବିଶେଷତଃ ଯଦି ଏହା ସ୍ଫୀତିକୃତ ଓ ଶ୍ରୁତିକଟୁ ନ ହୋଇ ମନୋରମଭାବେ ମିଶ୍ରିତ ହୋଇଥାଏ । ଏହାର ସତ୍ୟତା ପ୍ରମାଣ ସ୍ୱରୂପ ପ୍ଲେଟୋଙ୍କ ରଚନାରୁ ଗୋଟିଏ ଛନ୍ଦ ଉଲ୍ଲେଖ କଲେ ଯଥେଷ୍ଟ ହେବ । ଅନ୍ତିମ ସଂସ୍କାର ସମ୍ବନ୍ଧୀୟ ନିଜର ଏକ ଭାଷଣରେ ପ୍ରାରମ୍ଭରେ ସେ

କହିଛନ୍ତି—"ବାସ୍ତବରେ ଏଇ ଲୋକମାନେ ଆମ୍ଭମାନଙ୍କଠାରୁ ସେମାନଙ୍କର ପ୍ରାପ୍ୟ ପାଇସାରିଛନ୍ତି ଓ ସେଇ ଶ୍ରଦ୍ଧାଞ୍ଜଳି ପାଇସାରିବା ପରେ ସେମାନେ ସାର୍ବଜନୀନ ଖାତରେ ଦେଶ ଓ ବ୍ୟକ୍ତିଗତ ରୂପେ ସ୍ୱ ସ୍ୱ ବନ୍ଧୁଜନଙ୍କ ପକ୍ଷରୁ ନିଯୁତନିର୍ଦ୍ଦିଷ୍ଟ ଯାନାରେ ଏବେ ବାହାରିଛନ୍ତି" ମୃତ୍ୟୁକୁ ସେ 'ନିଯୁତ ନିର୍ଦ୍ଦିଷ୍ଟ ଯାନା' ଓ ଅନ୍ତ୍ୟେଷ୍ଟି କ୍ରିୟାର ବିଧିବିଧାନ ଲାଭ କରିବାକୁ 'ସାର୍ବଜନୀନଖାତରେ ଦେଶ ପକ୍ଷରୁ' ବୋଲି କହିଛନ୍ତି । ଭାଷାର ଏତାଦୃଶ ଗତି ପରିବର୍ତ୍ତନ ଭାବନାକୁ କମ୍ ଗରିମା ପ୍ରଦାନ କରୁନାହିଁ । ସେ ଶବ୍ଦାବଳୀକୁ ଅନଳଂକୃତ ଭାବେ ଗ୍ରହଣ କରି ଜଣେ ସଙ୍ଗୀତଜ୍ଞ ଭଳି ସେଗୁଡ଼ିକୁ ବ୍ୟବହାର କରିଛନ୍ତି, ସ୍ୱରସଙ୍ଗତି ସଦୃଶ ତାହାକୁ ଧ୍ୱନିମାଧୁର୍ଯ୍ୟ ସମନ୍ୱିତ କରିଛନ୍ତି – ଏହା କେବଳ ପର୍ଯ୍ୟାୟୋକ୍ତି ପ୍ରୟୋଗ ଦ୍ୱାରା ସମ୍ଭବ ହୋଇଛି । ସେହିପରି ଜେନୋଫୋନ କହିଛନ୍ତି "ଆପଣମାନେ ଶ୍ରମକୁ ସୁଖମୟ ଜୀବନର ପଥ ପ୍ରଦର୍ଶକ ରୂପେ ବିବେଚନା କରିଛନ୍ତି, ଆପଣମାନେ ନିଜ ନିଜ ଆତ୍ମାରେ ସୁନ୍ଦରତମ ଓ ସର୍ବୋତ୍ତମ ସୈନିକ-ସୁଲଭ ସକଳ ଗୁଣକୁ ସ୍ଥାନ ଦେଇଛନ୍ତି; ଅନ୍ୟ ସମସ୍ତଠାରୁ ଆପଣମାନଙ୍କର ପ୍ରଶଂସାରେ ହିଁ ଅଧିକ ଆନନ୍ଦ ।" "ଆପଣମାନେ ଶ୍ରମ କରିବା ନିମନ୍ତେ ପ୍ରସ୍ତୁତ" ଏହା ନ କହି ସେ କହିଛନ୍ତି "ଆପଣମାନେ ଶ୍ରମକୁ ସୁଖମୟ ଜୀବନର ପଥପ୍ରଦର୍ଶକ ରୂପେ ବିବେଚନା କରନ୍ତି ।" ସେହିପରି ଉକ୍ତ ବାକ୍ୟର ଶେଷାଂଶକୁ ବିସ୍ତାରିତ କରି ସେ ନିଜର ପ୍ରଶଂସାବାଦକୁ ଅଧିକ ବିସ୍ତାରିତ ଓ ଉନ୍ନତ ଭାବନାର ସୀମା ପ୍ରଦାନ କରିଛନ୍ତି । ଏହା ସହିତ ଆମେ ହେରୋଡୋଟସ୍‌ଙ୍କର ଅନୁକରଣୀୟ ପଂକ୍ତି ଯୋଗକରି ଦେଖି ପାରନ୍ତି "ଯେଉଁ ସିଥିଆ ଲୋକେ ମନ୍ଦିର ଲୁଣ୍ଠନ କରିଥିଲେ ସେମାନେ ଜଣେ ସ୍ୱର୍ଗୀୟ ନାରୀଦ୍ୱାରା ଅଭିଶପ୍ତ ହୋଇ ପୁରୁଷତ୍ୱ ହରାଇଥିଲେ ।"



ମାତ୍ର ଅନ୍ୟ ସମସ୍ତଠାରୁ ଏହି ପର୍ଯ୍ୟାୟୋକ୍ତି ଅଳଙ୍କାର କ୍ଷେତ୍ରରେ ଅତି ମାତ୍ରାରେ

ଅପବ୍ୟବହାର ହେବାର ସମ୍ଭାବନା ରହିଛି ଓ ଏହାର ପ୍ରୟୋଗ ନିମନ୍ତେ ଅତ୍ୟନ୍ତ ସଂଯମ ଆବଶ୍ୟକ । ଏହା ଅତି ଶୀଘ୍ର କ୍ଳେଶ୍ରାନତାର ପ୍ରଭାବ ସୃଷ୍ଟି କରିବାକୁ ଲାଗେ—ଏକ ପ୍ରକାର ଆଗ୍ରହଶୂନ୍ୟ ଲଘୁତାର ବାଷ୍ପ ସଞ୍ଚାର କରେ ଓ ବିରାଗ ଜନ୍ମାଏ । ଏଥିପାଇଁ ଅତ୍ୟନ୍ତ ସାହସୀ ଓ ଅଳଙ୍କାର ପ୍ରୟୋଗରେ ସଦା ଅତୃପ୍ତ ପ୍ଲେଟୋଙ୍କୁ ମଧ୍ୟ ଉପହସିତ ହେବାକୁ ପଡ଼ିଛି । କାରଣ ସେ ତାଙ୍କର 'ବିଧିସଂହିତା' ନାମକ ଗ୍ରନ୍ଥରେ କହିଛନ୍ତି "ସ୍ୱର୍ଣ୍ଣ କମ୍ବା ରୌପ୍ୟ ସମ୍ପଦକୁ ଆମ ରାଜ୍ୟରେ ପ୍ରତିଷ୍ଠା ଲାଭ କରିବାକୁ ଅନୁମତି ଦିଆଯିବା ଉଚିତ ନୁହେଁ ।" ଶୁଣିବାକୁ ମିଳେ, ଏହାଦ୍ୱାରା ସେ ବ୍ୟଞ୍ଜିତ କରିବାକୁ ଚାହାନ୍ତି ଯେ ସେ ଯଦି ଗୋ କମ୍ବା ମେଷ ସମ୍ପଦ ନିଷେଧ କରିଥାନ୍ତେ, ନିଶ୍ଚିତ ରୂପେ ସେ ଏହାକୁ ଗୋ ସମ୍ପଦ ଓ ମେଷ ସମ୍ପଦ ବୋଲି କହିଥାନ୍ତେ ।

ପ୍ରିୟ ବନ୍ଧୁ ଟେରେନ୍ସିଆନୁସ୍, ଉଦାତ୍ତ ତତ୍ତ୍ୱ ଦୃଷ୍ଟିରୁ ଅଳଙ୍କାର ପ୍ରୟୋଗର ଉପଯୋଗିତା ସମ୍ପର୍କିତ ଏହି ସଂକ୍ଷିପ୍ତ ଆଲୋଚନାରୁ ତୁମର ଜିଜ୍ଞାସା ତୃପ୍ତ ହୋଇପାରିବ ଆଶାକରି ସେଠାରେ ଏ ବିଷୟର ଆଲୋଚନା ସାଙ୍ଗ କରୁଛି । ମୁଁ ଯେଉଁ ବିଷୟଗୁଡ଼ିକ ଉଲ୍ଲେଖ କରିଛି ସେ ସମସ୍ତ ଶୈଳୀକୁ ଅଧିକ ଆବେଗପ୍ରବଣ ଓ ଶକ୍ତିସମ୍ପନ୍ନ କରିବାରେ ସାହାଯ୍ୟ କରେ; ତାଛଡ଼ା ଔଦାତ୍ତ୍ୟ ନିମନ୍ତେ ଆବେଗର ଦାନ ଯେଉଁପରି ଅଧିକ ଯେଉଁପରି ଚରିତ୍ର-ଚିତ୍ରଣ ନିମନ୍ତେ ବିନୋଦର ଦାନ ।




ମାତ୍ର ଯେହେତୁ ଶବ୍ଦ ମାଧ୍ୟମରେ ପ୍ରକାଶିତ ଭାବନା ଓ ଭାବନାର ଅଭିବ୍ୟକ୍ତି ଅନେକାଂଶରେ ପରସ୍ପର ସଂପୃକ୍ତ ସେଥିପାଇଁ ଆମେ ଅଭିବ୍ୟକ୍ତି ବିଷୟରେ ଏ ଯାବତ୍ ଉପେକ୍ଷିତ କେତେକ ବିଷୟର ବିଚାର ଏଠାରେ

ଉପସ୍ଥାପିତ କରିବା । ବୋଧ ବ୍ୟକ୍ତିମାନଙ୍କୁ ଏ ବିଷୟରେ ଅଧିକ ବୁଝାଇବା ଅପ୍ରାସଙ୍ଗିକ ହେବ ବୋଲି ମୁଁ ଆଶଙ୍କା କରେ ଯେ ଯଥୋଚିତ ଓ ଚମତ୍କାର ଶବ୍ଦାବଳୀର ବିନ୍ୟାସରେ ଶ୍ରୋତାଙ୍କୁ ବିସ୍ମିତ ମୁଗ୍ଧ କରିବାର ଶକ୍ତି ନିହିତ ଏବଂ ସକଳ ଲେଖକ ଓ ବକ୍ତା ଏତାଦୃଶ ଶବ୍ଦାବଳୀକୁ କାମନା କରିଥାନ୍ତି, ଆଉ କେବଳ ଏହାରି ଦ୍ୱାରା ସାହିତ୍ୟିକ ରଚନାରେ ଫୁଟି ଉଠେ ସୂକ୍ଷ୍ମତମ ମୂର୍ତ୍ତିକଳାର ଉଜ୍ଜ୍ୱଳ ପରିକାଷ୍ଠା, ମହିମା, ସୌନ୍ଦର୍ଯ୍ୟ, ମାର୍ଦ୍ଦବ, ଗରିମା, ବୀର୍ଯ୍ୟ ଓ ଶକ୍ତି ତଥା ତାହାର ଅନବଦ୍ୟ ସକଳଲାବଣ୍ୟ ; ଏହା ବସ୍ତୁମାନଙ୍କୁ ଜୀବନ ଦାନ କରେ । ବାସ୍ତବରେ ଦୃଢ଼ ଭାବେ କହିପାରିବ ଯେ ସୁନ୍ଦର ଶବ୍ଦାବଳୀହିଁ ଭାବନାର ବିଶେଷ ଆଲୋକ । ଚମତ୍କାର ଶବ୍ଦାବଳୀର ପ୍ରୟୋଗ ପ୍ରତ୍ୟେକ କ୍ଷେତ୍ରରେ ସଙ୍ଗତ ଏହା ମୁଁ କହିବାକୁ ଚାହେଁ ନାହିଁ । କୌଣସି ସାମାନ୍ୟ ବିଷୟକୁ ଚତୁରୀ ସହକାରେ ବିଶାଳ ଓ ଆଡମ୍ବରପୂର୍ଣ୍ଣ ଶବ୍ଦାବଳୀରେ ପ୍ରକାଶ କରିବା ଅର୍ଥ କୌଣସି କ୍ଷୁଦ୍ର ଶିଶୁର ମୁଖରେ ଖୁବ୍ ବଡ଼ ଏକ ଶୋକାନ୍ତ ଅଭିନୟର କୃତ୍ରିମ ମୁଖା ପରିଧାନ କରାଇ ଦେବା ସହ ସମାନ । କେବଳ କବିତାରେ ଓ.....



ଅନାକ୍ରିଅନ୍‌ଙ୍କ ଏହି ପଂକ୍ତିରେ ରହିଛି ସେହି ଅକୃତ୍ରିମ ଝଙ୍କାର :-

ଗୁରୁତ୍ୱ ନ ଦିଏ ମୁହିଁ ଆଉ ଏହି ଥ୍ରୀସୀୟ ଚପଳା ଘୋଟକୀରେ
ଏହି ବିଶିଷ୍ଟତା ଥିଓଫ୍ରେମସ୍‌ଙ୍କ ମୌଳିକ

ଉକ୍ତି ପ୍ରତି ମଧ୍ୟ ପ୍ରଯୁଜ୍ୟ, ଅନ୍ତତଃ, ଏଗୁଡ଼ିକର ସାଦୃଶ୍ୟର ନିକଟବର୍ତ୍ତିତା ହେତୁ ମୋ ଦୃଷ୍ଟିରେ ଏହାର ଏକ ବିଶେଷ ଅଭିବ୍ୟଞ୍ଜନା ଥିବା ପରି ପ୍ରତୀତ ହୁଏ ; ଯଦିଓ କେକିଲିଉସ୍ କୌଣସି କାରଣ ନ ଦର୍ଶାଇ ଏହାର ନିନ୍ଦାବାଦ

କରିଛନ୍ତି । ଐତିହାସିକ କହୁଛନ୍ତି ଫିଲିପ୍ ଅଶାନ୍ତିର ମାଂସ ହଜମ କରି-
ବାରେ ଅଦ୍ଭୁତ ସ୍ଫୂର୍ତ୍ତି ପ୍ରଦର୍ଶନ କଲେ ।" ଏଥିରୁ ଆମ୍ଭେ ଦେଖିଛୁ ଯେ
ଖୁବ୍ ଘରୁଆ ଭାଷା ବେଳେବେଳେ ଅତ୍ୟନ୍ତ ଆଳଂକାରିକ ଭାଷା ଅପେକ୍ଷା
ଅଧିକତର ଜୀବନ୍ତ । ସାଧାରଣ ଜୀବନର ଭାଷା ରୂପେ ତାହାକୁ ଚିହ୍ନିବାରେ
ବିଳମ୍ବ ହୋଇନଥାଏ ତଥା ପରିଚିତ ହୋଇଥିବାରୁ ଅତିଶୀଘ୍ର ପ୍ରସାର ଲାଭ
କରିପାରେ । ଏଥିପାଇଁ ଫିଲିପ୍‌ଙ୍କ ବିଷୟରେ କହିବାକୁ ଯାଇ —"ଅଶାନ୍ତିର
ମାଂସ ହଜମ କରିବାରେ" ଥିଓପମ୍ପସ୍ ଏପରି ଶବ୍ଦାବଳୀ ପ୍ରୟୋଗ କରିଛନ୍ତି
ଯାହା ଦ୍ୱାରା ସେ ଅତି ଜୀବନ୍ତ ଭାବରେ ବର୍ଣ୍ଣନା କରି ପାରିଛନ୍ତି ତାହାର
ବିଷୟରେ ଯେ ନିଜର ଉଦ୍ଦେଶ୍ୟ ସାଧନ ନିମନ୍ତେ ଅତ୍ୟନ୍ତ ଧୈର୍ଯ୍ୟ ଓ
ପ୍ରସନ୍ନତା ସହ ସମସ୍ତ ନୀଚ ଓ ଅପମାନଜନକ କଥାଗୁଡ଼ିକୁ ସହ୍ୟ କରି
ଯାଇଛନ୍ତି । ହେରୋଦୋତ୍ରସ୍‌ଙ୍କ ଦୁଇଟି ଉଦ୍ଧୃତାଂଶରେ ଏକଥା ଲକ୍ଷ୍ୟ
କରାଯାଇ ପାରେ "କ୍ଲିଓମେନେସ୍ ପାଗଳ ଭଳି ନିଜର ମାଂସକୁ ଗୋଟିଏ
ଛୋଟିଆ ଖଣ୍ଡାରେ ଖଣ୍ଡ ଖଣ୍ଡ କରି କାଟି ପକାଇଲା ଓ ଶେଷରେ ସାରା
ଶରୀରକୁ ଟୁକୁରା ଟୁକୁରା କରି ସେ ନିଜକୁ ହତ୍ୟା କଲା ।" ଅଥବା "ପିଥେସ୍
ସେ ପର୍ଯ୍ୟନ୍ତ ଯାହାଜରେ ଯୁଦ୍ଧ କରିବାକୁ ଲାଗିଲା ଯେ ପର୍ଯ୍ୟନ୍ତ ତାହାକୁ କାଟି
ଟିକି ଟିକି କରି ଦିଆଯାଇ ନଥିଲା ।" ଏଇ କଥାଗୁଡ଼ିକ ଅତି ଶୀଘ୍ର ସାଧାରଣ
ପାଠକର ବୋଧଗମ୍ୟ ହୁଏ; ମାତ୍ର ଏଥିରେ ଥିବା ଇତରତା ବାକ୍ୟର ଅଭି-
ବ୍ୟଂଜକତା ଦ୍ୱାରା ହ୍ରାସ ପାଇଛି ।

## ୩୨

ରୂପକାଳଂକାର କେତେ ସଂଖ୍ୟାରେ ଏକ ସଙ୍ଗରେ ପ୍ରଯୁକ୍ତ ହେବ
ଏ ବିଷୟରେ କେକିଲିଉସ୍ ସେଇ ସମାଲୋଚକମାନଙ୍କର ସମର୍ଥକ ବୋଲି
ଅନୁମିତ ହୁଅନ୍ତି ଯେଉଁମାନେ କହନ୍ତି, ଦୁଇଟି କିମ୍ବା ଅତି ବେଶୀ ହେଲେ
ତିନୋଟିରୁ ଅଧିକ ରୂପକ ଏକତ୍ର ପ୍ରଯୁକ୍ତ ହେବା ଉଚିତ ନୁହେଁ । ଯାହାହେଉ,

ଉପଲକ୍ଷ ଦୃଷ୍ଟିରୁ ହିଁ ରୂପକ ପ୍ରୟୋଗ ସ୍ୱୀକୃତ ହେବା ଉଚିତ ; ଯେତେବେଳେ ଆବେଗଉଚ୍ଛ୍ୱାସ ବେଗବନ୍ତ ଧାରା ସଦୃଶ ଆଗକୁ ମାଡ଼ିଚାଲେ ଓ ନିଜ ସହିତ ଅପରିହାର୍ଯ୍ୟ ସହାୟିକ ରୂପେ ରୂପକର ବିପୁଳ ସଂଗ୍ରହ ବହନ କରିନିଏ । ଏ ବିଷୟରେ ଦେମୋସ୍ଥେନେସ୍ (ଯେ କି ଏଠାରେ ମଧ୍ୟ ଆମର ବିଶ୍ୱସ୍ତ ଆଦର୍ଶ)ଙ୍କ ଉକ୍ତି ଉଲ୍ଲେଖ କରିହୋଇପାରେ—"ଯେଉଁ ଅଧମ ହୀନ ତୋଷାମୋଦକାରୀ ମୂଢ଼ମାନେ, ଯେଉଁମାନଙ୍କ ଭିତରୁ ପ୍ରତ୍ୟେକେ ନିଜ ମାତୃଭୂମିର ସୁନ୍ଦର ଅଙ୍ଗ ଛେଦନ କରିଛନ୍ତି, ଯେଉଁମାନେ ନିଜର ସ୍ୱାଧୀନତାକୁ ପ୍ରଥମେ ଫିଲିପ୍ ଓ ଏବେ ଆଲେକ୍ଜାଣ୍ଡାରଙ୍କ ନିକଟରେ ବିକ୍ରୀ କରିଛନ୍ତି, ଯେଉଁମାନେ ନିଜର ଉଦର-ପୂର୍ତ୍ତି ଓ ନିଜର ହୀନତମ ଲାଳସା ଦ୍ୱାରା ନିଜ ସୁଖର ପରିମାପ କରନ୍ତି, ଯେଉଁମାନେ ଗ୍ରୀକ୍‌ମାନଙ୍କ ମଧ୍ୟରେ ଥିବା ପ୍ରାଚୀନ ଆଦର୍ଶ ଓ ସୌଭାଗ୍ୟର ମାନଦଣ୍ଡ—ମୁକ୍ତମାନବ ରୂପେ ବଞ୍ଚିବା ତଥା କାହାକୁ ପ୍ରଭୂରୂପେ ସ୍ୱୀକାର ନ କରିବା ଧାରଣାକୁ ବିପର୍ଯ୍ୟସ୍ତ କରିଦେଇଛନ୍ତି ।" ଏଠାରେ ସ୍ୱଦେଶର ବିଶ୍ୱାସଘାତକମାନଙ୍କ ପ୍ରତି ବକ୍ତାଙ୍କର ଘୃଣା ପରିପୂର୍ଣ୍ଣ କ୍ରୋଧ ଦ୍ୱାରା ରୂପକର ସଂଖ୍ୟା ଦୃଷ୍ଟି ବହିର୍ଭୂତ ରହିଯାଇଛି । ଏହି ଦୃଷ୍ଟିରୁ ଆରିଷ୍ଟୋଟଲ ଓ ଥେଓଫ୍ରାସ୍ଟସ୍ ଶୃଙ୍ଖଳିତ ରୂପକାବଳୀକୁ କୋମଳ କରି କହିବା ପାଇଁ "ଯଦି ଯେପରି", "ଯେଉଁପରି", "ଯଦି ମୋତେ ଏହା କହିବାକୁ ଦିଆଯାଏ", "ଯଦି ଏହା କହିବା ଉଚିତ ହେବ" ଇତ୍ୟାଦି ବାକ୍ୟାଂଶର ସାହାଯ୍ୟ ନେବା ପାଇଁ ଅନୁମୋଦନ କରିଛନ୍ତି । କାରଣ ସେମାନେ ଦୃଢ଼ଭାବେ ଘୋଷଣା କରିଛନ୍ତି ଯେ, ଏହାଦ୍ୱାରା ରୂପକାବଳୀର ଔଦ୍ଧତ୍ୟର ଆଶଙ୍କା ହ୍ରାସ ପାଏ । ଏ ସବୁର ଯେ ପ୍ରୟୋଜନ ଅଛି ତାହା ମୁଁ ଅସ୍ୱୀକାର କରୁନାହିଁ, ତା ସତ୍ତ୍ୱେ, ମୁଁ ଅନ୍ୟ ଅଳଙ୍କାରଗୁଡ଼ିକ ସମ୍ବନ୍ଧରେ ଯେଉଁ ମନ୍ତବ୍ୟ ଦେଇଥିଲି ତାହାର ପୁନରାବୃତ୍ତି କରି ଦୃଢ଼ଭାବେ କହିବି ଯେ, ରୂପକର ବାହୁଲ୍ୟ ଓ ପ୍ରଖରତା ନିମନ୍ତେ ଅବସର-ଉପଯୋଗୀ ପ୍ରବଳ ଆବେଗ ଓ ଅକୃତ୍ରିମ ଔଦାତ୍ତ୍ୟହିଁ ପ୍ରାକୃତିକ ପ୍ରତିବିଧାନ । କାରଣ ଏ ଗୁଡ଼ିକରେ ଏକ ସହଜାତ ଶକ୍ତି ନିହିତ ଯାହା ନିଜର ଅପ୍ରତିରୋଧ ପ୍ରବାହରେ ହସ୍ତକ୍ଷେପବର୍ତ୍ତୀ ପ୍ରତ୍ୟେକ ବସ୍ତୁକୁ ବହି

ହୋଇପାରେ ଅଥବା ଆମେ କହିବୁ ଯେ, ସେଗୁଡ଼ିକ ଏକାନ୍ତଭାବେ ଦୁଃସାହସିକ ରୂପକାବଳୀର ପ୍ରୟୋଗ ଅପରିହାର୍ଯ୍ୟ ବୋଲି ଦାବୀ କରନ୍ତି ଆଉ ଶ୍ରୋତାଙ୍କୁ ନିବୃତ୍ତ ହୋଇ ରୂପକର ସଂଖ୍ୟା ହେଜ ସମାଲୋଚନା କରିବାକୁ ଅବସର ଦିଅନ୍ତି ନାହିଁ, କାରଣ ସେ ନିଜେ ବକ୍ତାର ଆବେଗର ପ୍ରବାହରେ ଭାସି ଚାଲିଥାନ୍ତି ।

ପୁନଶ୍ଚ ପରିମିତ ବିଷୟ ଓ ବର୍ଣ୍ଣନାତ୍ମକ ସ୍ଥଳର ଚୟନ ସମ୍ପର୍କରେ ରୂପକ ପରମ୍ପରାର ପୁଙ୍ଖାନୁପୁଙ୍ଖ ଓ ନିରବଚ୍ଛିନ୍ନ ସ୍ୱାତନ୍ତ୍ର୍ୟ ଅନ୍ୟ କେଉଁଠିରୁ ମିଳେ ନାହିଁ । ଏହି ଉପାୟରେ ଜେନୋଫୋନ ମାନବଶରୀର ସଂସ୍ଥାନର ସୃଷ୍ଟି ଚୟନ କରିଛନ୍ତି; ପ୍ଳେଟୋଙ୍କ ରଚନାରେ ତା ଠାରୁ ଆହୁରି ଅଧିକ ଉଜ୍ଜ୍ୱଳ ଓ ଜୀବନ୍ତ ଚିତ୍ର ଦେଖିବାକୁ ମିଳେ । ମନୁଷ୍ୟର ମସ୍ତକକୁ ସେ କହିଛନ୍ତି ଏକ ଦୁର୍ଗ; ମସ୍ତକକୁ ଓ ବକ୍ଷସ୍ଥଳଠାରୁ ବିଭକ୍ତ କରୁଥିବା ଗ୍ରୀବା ଏକ ଯୋଜକ ସଦୃଶ ଅବସ୍ଥିତ; ଏହାକୁ ଧାରଣ କରିବା ପାଇଁ ନିମ୍ନ ଦେଶରେ ମେରୁ ସଦୃଶ ମେରୁଦଣ୍ଡାସ୍ଥି ବିଦ୍ୟମାନ । ସୁଖାସକ୍ତି ତାଙ୍କ ଦୃଷ୍ଟିରେ ମନୁଷ୍ୟକୁ ପାପ କର୍ମରେ ପ୍ରଲୁବ୍ଧ କରୁଥିବା ପ୍ରଲୋଭନ ଭଳି ଓ ଜିହ୍ୱା ସ୍ୱାଦ ସକଳର ବିଚାରକ । ହୃଦୟ ଏକ ସଙ୍ଗେ ରକ୍ତବାହୀ ନାଡ଼ିଗୁଡ଼ିକର ଗ୍ରନ୍ଥି ଓ ଦ୍ରୁତ ସଞ୍ଚାଳିତ ରକ୍ତଧାରାର ଭଣ୍ଡାର ; ଏହା ଶରୀରର ପ୍ରହରୀ ପ୍ରକୋଷ୍ଠରେ ଅବସ୍ଥାପିତ । ରକ୍ତବାହୀ ଧମନୀଗୁଡ଼ିକର ଶାଖା ପ୍ରଶାଖାଗୁଡ଼ିକୁ ସେ ସଙ୍କୀର୍ଣ୍ଣ ଗଳି ନାମରେ ନାମିତ କରିଛନ୍ତି । ସେ କହିଛନ୍ତି, "ହୃଦୟ ଯେତେବେଳେ ବିପଦ ଆଗମନରେ ଆଶଙ୍କିତ କିମ୍ବା ପ୍ରବଳ ଆବେଗରେ ଉତ୍ତେଜିତ ହୋଇଉଠେ— କାରଣ ସେତେବେଳେ ତାହା ଅତ୍ୟନ୍ତ ଉତ୍ତପ୍ତ ହୋଇପଡ଼ିଥାଏ, ହୃଦୟର ପ୍ରବଳ ସ୍ପନ୍ଦନକୁ ଧାରଣ କରିବା ପାଇଁ କୌଣସି ପ୍ରକାର ଛାଞ୍ଚରେ ଢାଳିବା ଭଳି ଦେବଗଣ ଆମ ଭିତରେ ବାୟୁକୋଷର ସ୍ଥାପନା କରିଛନ୍ତି । ଏହି ବାୟୁକୋଷ ଏପରି ଭାବେ ନିର୍ମିତ ଯେ ଏହା ନରମ ଓ ରକ୍ତଶୂନ୍ୟ ତଥା ଭିତରେ ଛିଦ୍ରଯୁକ୍ତ ହୋଇଥିବାରୁ ସେଗୁଡ଼ିକ ଏକ ପ୍ରକାର ଆଘାତ ନିବାରକ ଯନ୍ତ୍ରଭଳି କାର୍ଯ୍ୟ

କରନ୍ତି ଆଉ ମଧ୍ୟ ଆନ୍ତରିକ ଉତ୍ତେଜନାରେ ହୃଦୟ ଯେତେବେଳେ ଫୁଟିବାକୁ ଲାଗେ ତାହାର ସ୍ପନ୍ଦନକୁ କୋମଳ କରି ତାହାକୁ ଆଘାତରୁ ରକ୍ଷା କରନ୍ତି । ବାସନାରାଶିର ଅଧିଷ୍ଠାନ ସ୍ଥଳର ତୁଳନା ସେ କରିଛନ୍ତି ନାରୀ-ମହଲ ସହିତ ଓ କ୍ରୋଧର ନିବାସ-ସ୍ଥଳକୁ ପୁରୁଷମାନଙ୍କର ବାସଗୃହ ସହିତ । ପୁନଶ୍ଚ ପ୍ଲୀହା ହେଉଛି ଆଭ୍ୟନ୍ତରୀଣ ଦେହଯନ୍ତ୍ରଗୁଡ଼ିକର ଗାମୁଛା ଯେଉଁମାନଙ୍କର ସ୍ରାବ ସକଳ ଦ୍ୱାରା ଏହା ଥରକୁ ଥର ସିକ୍ତ ହୋଇଉଠେ ଓ ଆଭ୍ୟନ୍ତରୀଣ ଦୂଷିତ ପଦାର୍ଥ ଦ୍ୱାରା ଖୁବ୍ ବଡ଼ ଆକାରରେ ସ୍ଫୀତ ହୋଇଉଠେ । ସେ ପୁଣି କହିଛନ୍ତି, "ଏହାପରେ ଦେବତାମାନେ ସମଗ୍ର ଶରୀରକୁ ମାଂସ ଦ୍ୱାରା ଆବୃତ କରିଦେଲେ ଓ ବାହ୍ୟ ଆଘାତରୁ ଶରୀରକୁ ରକ୍ଷା କରିବା ପାଇଁ ପ୍ରତିବନ୍ଧକ ସ୍ୱରୂପ ଉପରେ ଢାଙ୍କିଦେଲେ ସତେ ଯେପରି ଏହା ଏକ ଉପାଧାନ ।" ରକ୍ତକୁ ସେ ମାଂସର ଶସ୍ୟଭୂମିରୂପେ ନାମିତ କରିଛନ୍ତି । ସେ କହିଚାଲିଛନ୍ତି, "ପୁଷ୍ଟିସାଧନ ପ୍ରକ୍ରିୟାରେ ସାହାଯ୍ୟ କରିବା ନିମନ୍ତେ ଦେବତାମାନେ ଶରୀରକୁ ବିଭିନ୍ନ ପ୍ରବାହିକା ନାଡ଼ୀରେ ବିଭକ୍ତ କରିଦେଲେ, ଉଦ୍ୟାନରେ ଯେପରି ଖାଇ ଖୋଳାଯାଏ, ସେଇପରି ନାଳୀ କାଟିଦେଲେ, ଫଳରେ ଶରୀର ଛୋଟ ଛୋଟ ନାଳୀର ଏକ ଶୃଙ୍ଖଳା ହୋଇଥିବାରୁ ରକ୍ତବାହୀ ନାଡ଼ୀଗୁଡ଼ିକର ପ୍ରବାହ ଏକ ଚିରସ୍ଥାୟୀ ଉତ୍ସମୁଖରୁ ବହିର୍ଗତ ହେବାପରି ପ୍ରବାହିତ ହୋଇ ପାରିବ ।" ସେ ପୁଣି କହିଛନ୍ତି, "ଶେଷ ମୁହୂର୍ତ୍ତ ଆସିଗଲେ ଜାହାଜକୁ ନଙ୍ଗରମୁକ୍ତ କଲାଭଳି ଆତ୍ମାର ବନ୍ଧନକୁ ଶିଥିଳ କରି ରଖାଯାଇଛି ଓ ତାହାକୁ ଯଥେଚ୍ଛ ବିଚରଣ କରିବାର ସ୍ୱାଧୀନତା ଦିଆଯାଇଛି ।" ଏହିପରି ଗୋଟିକ ପରେ ଗୋଟିଏ ଅସଂଖ୍ୟ ତତ୍ତୁଲ୍ୟ କଳ୍ପନା ଦୃଷ୍ଟାନ୍ତ ହିସାବରେ ଲାଗିଛନ୍ତି । ମାନବ ଆଲଙ୍କାରିକ ଭାଷାର ନୈସର୍ଗିକ ଶକ୍ତି କେତେ ଅଧିକ ଓ ଉଦାତ୍ତ ତତ୍ତ୍ୱର ପ୍ରତିଷ୍ଠା ନିମନ୍ତେ ରୂପକାବଳୀ କେତେ ମାତ୍ରାରେ ଅନୁକୂଳ ତଥା ସକଳ ଆବେଗଦୀପ୍ତ ଓ ବର୍ଣ୍ଣନାତ୍ମକ ପ୍ରସଙ୍ଗଗୁଡ଼ିକରେ ସେଗୁଡ଼ିକ କି ମୁଖ୍ୟ ଭୂମିକା ଗ୍ରହଣ କରନ୍ତି—ତାହାର ପ୍ରତିପାଦନ ନିମନ୍ତେ ମୋର ଉପର୍ଯ୍ୟୁକ୍ତ ଉଦାହରଣ-ଗୁଡ଼ିକ ପର୍ଯ୍ୟାପ୍ତ ।

ଉକ୍ତିର ଅନ୍ୟ ସକଳ ରମଣୀୟତା ସଦୃଶ ଭାଷାର ଆଲଂକାରିକ ପ୍ରୟୋଗର ଆତିଶଯ୍ୟ ପ୍ରତି ନିତ୍ୟପ୍ରବଣତା ରହିବା ଯେ ଏକ ନିଶ୍ଚିତ ସତ୍ୟ ତାହା ମୁଁ ବିସ୍ତାରିତ ଭାବେ କହିବାକୁ ଚାହୁଁ ନାହିଁ । ମୁଖ୍ୟତଃ ଏଥିପାଇଁ ସ୍ୱୟଂ ପ୍ଲେଟୋ ମଧ୍ୟ ବହୁ ଭାବେ ସମାଲୋଚିତ ହୋଇଥା'ନ୍ତି । କାରଣ ସେ ପ୍ରାୟତଃ ଏକ ପ୍ରକାର ଭାଷାର ଉନ୍ମତ୍ତତାରେ ଉଗ୍ର ଓ ଅତିରଞ୍ଜିତ ରୂପକାବଳୀର ଅସଂଯତ ପ୍ରୟୋଗରେ ମାତି ଯା'ନ୍ତି । ଏକ ସ୍ଥାନରେ ସେ କହିଛନ୍ତି, "ଏହା କହିବା ସହଜ ନୁହେଁ ଯେ ଗୋଟିଏ ନଗରକୁ ପାନ ସ୍ୱରୂପ ହେବାକୁ ପଡ଼ିବ ଯେଉଁଥିରେ ଉନ୍ମତ୍ତ ସୁରା ଢଳା ଗଲେ ଉତ୍ତପ୍ତ ହୋଇ ଉଠୁଥିବ ; ମାତ୍ର ଆଉ ଜଣେ ଆତ୍ମସଂଯମୀ ଦେବତାଙ୍କ ମହତ୍ ମିଳନ ଦ୍ୱାରା ଅନୁଶାସିତ ହେଲେ ତାହା ଏକ ଉତ୍ତମ ଓ ସଂଯତ ପାନୀୟରେ ପରିଣତ ହୁଏ ।" ବାସ୍ତବରେ ସମାଲୋଚକଙ୍କ ବକ୍ତବ୍ୟ ହେଲା, ଜଳକୁ "ଆତ୍ମସଂଯମୀ ଦେବତା' ରୂପେ ଓ ମିଶ୍ରଣ ପ୍ରକ୍ରିୟାକୁ "ଅନୁଶାସନ" ବୋଲି କହିବା—କବିର ଭାଷାରେ କଥା କହିବା ସଦୃଶ, ଆଉ ତାହା ମଧ୍ୟ କୌଣସି ସଂଯମୀ କବିର ଭାଷା ନୁହେଁ । ଏତାଦୃଶ ତ୍ରୁଟିଗୁଡ଼ିକୁ ଭର୍ତ୍ସନା କରି ବିରୋଧୀ ସମାଲୋଚକ କେକିଲିଉସ୍ ନିଜର "ଲୁସିଅସ୍ ସୌନ୍ଦର୍ଯ୍ୟ ବିଚାର" ପ୍ରବନ୍ଧରେ ସେଇ ଲେଖକଙ୍କୁ ପ୍ଲେଟୋଙ୍କଠାରୁ ସର୍ବୋତ୍ତମ ଦୃଷ୍ଟିରୁ ଉଚ୍ଚକୋଟିର ଲେଖକ ରୂପେ ଅତି ନିର୍ଭୀକ ଭାବେ ଘୋଷଣା କରିଛନ୍ତି । କିନ୍ତୁ ବିଚାରକ ହେବା ପାଇଁ ସେ ଦୁଇଟି ଦିଗରୁ ଅଯୋଗ୍ୟ— ଲୁସିଅସଙ୍କ ପ୍ରତି ତାଙ୍କର ନିଜଠାରୁ ମଧ୍ୟ ଅଧିକ ପ୍ରେମ ଥିଲା ଓ ଲୁସିଅସଙ୍କ ପ୍ରତି ତାଙ୍କର ଯେତେ ପ୍ରେମ ଥିଲା ତା'ଠାରୁ ଅଧିକ ଅଶ୍ରଦ୍ଧା ଥିଲା ପ୍ଲେଟୋ ଓ ତାଙ୍କର ରଚନାବଳୀ ପ୍ରତି । ଅଧିକନ୍ତୁ ସେ ଏପରି ଅନ୍ଧ ପକ୍ଷଭୁକ୍ତ ବ୍ୟକ୍ତି ଯେ ତାଙ୍କର ପ୍ରତିଜ୍ଞା ଗୁଡ଼ିକ ସର୍ବତୋଭାବେ ବିବାଦାସ୍ପଦ । ସେ ବୃଥା ଆସ୍ଫାଳନ କରି ଲୁସିଅସ୍‌କୁ ଜଣେ ନିର୍ଦ୍ଦୋଷ ଓ ନିଷ୍କଳଙ୍କ ଲେଖକ କହୁଥିବା ବେଳେ, ପ୍ଲେଟୋ ତାଙ୍କ ମତରେ ଦୋଷପରିପୂର୍ଣ୍ଣ । ମାତ୍ର ବାସ୍ତବ ସତ୍ୟ ଏହା ନୁହେଁ କି ସତ୍ୟର ନିକଟବର୍ତ୍ତୀ ମଧ୍ୟ ନୁହେଁ ।

# ମାମା

ମାତ୍ର ଧରିନିଆ ଯାଉ ଯେ ବର୍ତ୍ତମାନ ଆମେ କୌଣସି ଜଣେ ବାସ୍ତବରେ ଅକଳଙ୍କ ଓ ଅନବଦ୍ୟ ଲେଖକଙ୍କ ଅସ୍ତିତ୍ୱ ସ୍ୱୀକାର କରିନେବା । ସେଠାରେ କ'ଣ ଏ ପ୍ରଶ୍ନ ଉଠାଇବା ଯଥାର୍ଥ ନୁହେଁ ଯେ, ଆମେ କବିତା ଓ ଗଦ୍ୟ ରଚନାରେ କେଉଁ ବିଷୟକୁ ଅଗ୍ରାଧିକାର ଦେବା ଉଚିତ—କିଛି ମାତ୍ରାରେ ସଦୋଷ ଔଦାତ୍ତ୍ୟକୁ ଅଥବା ଏପରି ଏକ ଶୈଳୀକୁ ଯାହା କେବେ-ହେଲେ ପରିମିତ ଉତ୍କର୍ଷର ଊର୍ଦ୍ଧ୍ୱକୁ ନ ଉଠି ମଧ୍ୟ କେବେହେଲେ ପାଦ ଖସାଏ ନାହିଁ ଓ ସଂଶୋଧନ ଆବଶ୍ୟକ କରେ ନାହିଁ ? ଆଉ ପୁଣି ପ୍ରଶ୍ନ ମଧ୍ୟ କରଯାଇ ପାରେ ଯେ, ସାହିତ୍ୟରେ କାହାକୁ ଯଥାର୍ଥରେ ପ୍ରଥମ ସ୍ଥାନ ଦିଆଯିବ—ବହୁ ସଂଖ୍ୟକ ଗୁଣାବଳୀକୁ ଅଥବା ମହାନ୍ ସଦ୍‌ଗୁଣାବଳୀକୁ ? କାରଣ ଏଇପରି ପ୍ରଶ୍ନାବଳୀ ଔଦାତ୍ତ୍ୟ ମୀମାଂସା ସମ୍ପର୍କରେ ସର୍ବଥା ସମୀଚୀନ ଓ ତୁରନ୍ତ ତାହାର ସମାଧାନ କରିବାକୁ ପଡ଼ିବ ।

ତା'ପରେ, ମୁଁ ଭଲ ଭାବେ ଜାଣେ ଯେ, ବିରାଟ ପ୍ରତିଭା ବିଶୁଦ୍ଧତା ଠାରୁ ବହୁ ଦୂରରେ ଥାଏ । ବିଶୁଦ୍ଧତା ଉପରେ ସର୍ବଦା ଦୃଢ ପ୍ରତିଜ୍ଞ ରହିଥିବା ମନ କ୍ଷୁଦ୍ର ବିଷୟରେ ତାଡ଼ିତ ହେବାର ସମ୍ଭାବନା ରହିଥାଏ ; କିନ୍ତୁ ମହତ୍ ଭାବନାର ଐଶ୍ୱର୍ଯ୍ୟରେ, ବିପୁଳ ଭୌତିକ ସମ୍ପଦ ସଦୃଶ, ଘଟଣା କ୍ରମେ କିଛି ନା କିଛି ପ୍ରମାଦ ଅବଶ୍ୟ ରହି ଯାଇଥାଏ । ଅଉ ଏହା ଅବଶ୍ୟମ୍ଭାବୀ ରୂପେ ତଦ୍ରୂପ ନୁହେଁ କି ? କୌଣସି ପ୍ରକାର ବିପଦ ବରଣ ନ କରି, କେବେହେଲେ ଉଚ୍ଚ ଲକ୍ଷ୍ୟ ନ ରଖି ଅଧମ ଓ ମଧ୍ୟମ କୋଟିର ଲେଖକ ସାଧାରଣତଃ ଦୋଷ-ମୁକ୍ତ ଓ କଳଙ୍କଗ୍ରସ୍ତ ହେବାରୁ ସୁରକ୍ଷିତ ରହିଥାନ୍ତି । ଅନ୍ୟ ପକ୍ଷରେ, ସାହିତ୍ୟର ଉତ୍ତୁଙ୍ଗ ପଥ ତାହାର ଉତ୍ତୁଙ୍ଗତା ହେତୁ ସର୍ବଦା ବିପଦ୍ ସଙ୍କୁଳ ହୋଇଥାଏ । ତା'ପରେ, ମୁଁ ଭଲ ରୂପେ ଜାଣିଛି ଯେ, ଏପରି ଏକ ବିଧି ରହିଛି ଯାହା ଦ୍ୱାରା ମାନବ—ରଚନାର ଦୁର୍ବଳ ଦିଗଗୁଡ଼ିକ ପ୍ରଥମେ ଦୃଷ୍ଟିରେ ପଡ଼େ ଓ

ସେଗୁଡ଼ିକର ଦୋଷସମୂହ ଦୁରପନେୟ ରୂପେ ସ୍ମୃତିରେ ମୁଦ୍ରିତ ହୋଇ ରହିଯାଏ ; ମାତ୍ର ସେଗୁଡ଼ିକର ଗୁଣାବଳୀ ଅତି ଶୀଘ୍ର ଅଦୃଶ୍ୟ ହୋଇଯାଏ । ତଥାପି, ମୁଁ ଯଦିଓ ନିଜେ ହୋମର ଓ ଅନ୍ୟ ଉଚ୍ଚ କୋଟିର ଲେଖକମାନଙ୍କ ରଚନାର ଅନେକ ଦୋଷଯୁକ୍ତ ସ୍ଥଳ ଉଲ୍ଲେଖ କରିଛି ଓ ମୁଁ ଯଦିଓ ସେମାନଙ୍କ ତ୍ରୁଟି ବିଚ୍ୟୁତିର ପକ୍ଷପାତୀ ହେବାକୁ ଚାହୁଁ ନାହିଁ, ତା' ସତ୍ତ୍ୱେ ମୁଁ ସେଗୁଡ଼ିକୁ ଅନବଧାନତା ସ୍ୱରୂପ ସେତେ ବେଶୀ ଇଚ୍ଛାକୃତ ଗୁରୁତର ପ୍ରମାଦ ବୋଲି କହିବି ନାହିଁ, ସାମାନ୍ୟ ବିଷୟର ଉପେକ୍ଷା ଭାବ ହେତୁ ତାହା ଅବିଚାରିତ ଭାବେ ରହି ଯାଇଥାଏ । ଏହା ଏପରି ଏକ "ମହତ୍ ବ୍ୟତିକ୍ରମ" ଯାହା ଉନ୍ନତ ପ୍ରତିଭାଶାଳୀ ଠାରେ ନିସର୍ଗ-ସିଦ୍ଧ ରୂପେ ଦେଖା ଯାଇଥାଏ । ତଥାପି ମୁଁ ଦୃଢ଼ ମତ ପୋଷଣ କରେ ଯେ, ମହତ୍ ଗୁଣାବଳୀ ସର୍ବତ୍ର ସମାନ ରୂପେ ନିର୍ବାହ କରିଯାଇ ନ ପାରିଲେ ମଧ୍ୟ ତୁଳନାତ୍ମକ ଦୃଷ୍ଟିରୁ ସାହିତ୍ୟରେ ସର୍ବଦା ତାହାକୁ ପ୍ରଥମ ସ୍ଥାନ ଦେବାକୁ ପଡ଼ିବ ; ଆଉ କେଉଁ କାରଣରୁ ନ ହେଲେ ମଧ୍ୟ କେବଳ ତହିଁରେ ପ୍ରତିଭାତ ଆତ୍ମାର ବିରାଟତ୍ୱ ପାଇଁ ତାହାକୁ ଏହି ସ୍ଥାନ ଦେବା ଉଚିତ । ଉଦାହରଣ ସ୍ୱରୂପ—ଆପୋଲୋନିଅସ୍ କୃତ "ଆର୍ଗୋନଟିକା" ନାମକ ଗ୍ରନ୍ଥରେ ବସ୍ତୁତଃ ଆମକୁ ଗୋଟିଏ ତ୍ରୁଟିଶୂନ୍ୟ କବିତା ଦେଇଛନ୍ତି ; ଆଉ କେତେବେଳେ କେମିତି ଭିନ୍ନ ଶୈଳୀ ପାଇଁ ଉଦ୍ୟମ କରିଥିଲେ ମଧ୍ୟ ସେ ସବୁକୁ ବାଦ ଦେଲେ ଥିଓକ୍ରିଟସ୍ ତାଙ୍କର ଗୋଷ୍ଠ-ଗୀତିକା ଗୁଡ଼ିକରେ ଅତ୍ୟନ୍ତ ସଫଳ । ଏତେ ସତ୍ତ୍ୱେ ତୁମେ କ'ଣ ଆପୋଲୋନିଅସ୍ ହେବା ଅପେକ୍ଷା ବରଂ ହୋମର ହେବାକୁ ଚାହିଁବ ନାହିଁ ? ଅଥବା ଇରାଟୋସ୍ଥେନେସ୍‌ଙ୍କ 'ଏରିଗୋନ' ରଚନାକୁ ନିଅ—ଏହି କ୍ଷୁଦ୍ର-ରଚନାଟିରେ ଯେହେତୁ କୌଣସି ତ୍ରୁଟି ନାହିଁ, ସେଥି ପାଇଁ ସେ କ'ଣ ଆର୍କିଲୋଖସ୍‌ଙ୍କଠାରୁ ବଡ଼ ଲେଖକ ? ଯାହାଙ୍କ ରଚନାରେ ଭରି ରହିଛି ସକଳ ଅବ୍ୟବସ୍ଥିତ ପ୍ରାଚୁର୍ଯ୍ୟ, ସେହି ଉଦ୍ଦାମ ଈଶ୍ୱର ଦତ୍ତ ପ୍ରତିଭା ଯେ କି ନିୟମ ଶୃଙ୍ଖଳାର ବିରୋଧୀ, ତାହାଙ୍କଠାରୁ ଶ୍ରେଷ୍ଠତର ? ଅଥବା ଗୀତିକବିତା କ୍ଷେତ୍ରରେ ତୁମେ କ'ଣ ପିଣ୍ଡାରଙ୍କ ଅପେକ୍ଷା ବକିଲିଦେସ୍ ହେବାକୁ ପସନ୍ଦ କରିବ କିମ୍ବା ଶୋକାନ୍ତ ନାଟକ କ୍ଷେତ୍ରରେ ସୋଫୋକ୍ଲିସ୍‌ଙ୍କ ଅପେକ୍ଷା କିଓସ୍‌ର ଇଓନ୍‌ଙ୍କୁ

ଅଧିକ ପସନ୍ଦ କରିବ ? ଏ କଥା ସତ ଯେ, ଇଓ ଓ ବକିଲିଦେସ୍‌ଙ୍କର କେବେହେଲେ ପଦସ୍ଖଳନ ଘଟେ ନାହିଁ—ସେମାନଙ୍କର ଶୈଳୀ ସର୍ବଦା ପରିଚ୍ଛନ୍ନ ଓ ମନୋରମ । ଅନ୍ୟ ପକ୍ଷରେ, ପିଣ୍ଡାର ଓ ସୋଫୋକ୍ଲିସ୍ ବେଳେ ବେଳେ ବିଭୂତିର ବହ୍ନିଦୂରବ୍ୟାପୀ ଉଜ୍ଜ୍ୱଳଦୀପ୍ତିରେ ଅଗ୍ରସର ହୁଅନ୍ତି ; ମାତ୍ର ପ୍ରାୟତଃ ଅପ୍ରତ୍ୟାଶିତ ଓ ଦୁର୍ଭାଗ୍ୟଜନକ ନଷ୍ଟପ୍ରଭତାରେ ଦୃଷ୍ଟିରୁ ଅନ୍ତର୍ହିତ ହୁଅନ୍ତି । ତା ସତ୍ତ୍ୱେ କୌଣସି ବିବେକସମ୍ପନ୍ନ ବ୍ୟକ୍ତି ଅସ୍ୱୀକାର କରିବେ ନାହିଁ ଯେ, ସୋଫୋକ୍ଲିସ୍‌ଙ୍କର ଖଣ୍ଡିଏ ମାତ୍ର ନାଟକ, ଅଡ଼ିପସ୍, ଇଓଙ୍କ ଏକତ୍ର ସମଗ୍ର ନାଟକାବଳୀଠାରୁ ଅଧିକ ମୂଲ୍ୟବାନ୍ ।

## ୩୪

ଯଦି ଜଣେ ଲେଖକର ଗୁଣରେ ଉଚ୍ଚତା ଅପେକ୍ଷା ଗୁଣରେ ସଂଖ୍ୟାକୁ ଆମେ ସଫଳତାର ମାନଦଣ୍ଡ ରୂପେ ଗ୍ରହଣ କରୁ ତେବେ ସେ ଦୃଷ୍ଟିରୁ ବିଚାର କଲେ ହାଇପେରିଦେସ୍‌ଙ୍କୁ ଦେମୋସ୍ଥେନେସ୍‌ଙ୍କ ଅପେକ୍ଷା ଶ୍ରେଷ୍ଠ ବାଗ୍ମୀ ସ୍ୱୀକାର କରିବାକୁ ପଡ଼ିବ । କାରଣ ହାଇପେରିଦେସ୍‌ଙ୍କ ରଚନାରେ ସମୃଦ୍ଧ ସ୍ୱର-ବୈଚିତ୍ର୍ୟ ଓ ଗୁଣର ଅସାମାନ୍ୟ ବୈବିଧ ପରିଦୃଷ୍ଟ ହୁଏ । ଆମେ ତାଙ୍କୁ କହିବା, ସେ ସବୁ କ୍ଷେତ୍ରରେ ଦ୍ୱିତୀୟ-ଉତ୍ତମ ପ୍ରସିଦ୍ଧ କ୍ରୀଡ଼ାପ୍ରତିଯୋଗୀଙ୍କର ଅଧିନାୟକ ସଦୃଶ, ଯଦିଓ ପ୍ରତ୍ୟେକ ପ୍ରତିଯୋଗିତାରେ ତାଙ୍କୁ ପ୍ରତିଦ୍ୱନ୍ଦ୍ୱୀଙ୍କୁ ପ୍ରଥମ ପୁରସ୍କାର ଛାଡ଼ି ଦେବାକୁ ପଡୁଥିଲା, ତଥାପି ଅନ୍ୟ କୌଣସି ପଞ୍ଚବିଧ କ୍ରୀଡ଼ାରେ ସେ ଥିଲେ ଅନଭ୍ୟସ୍ତମାନଙ୍କ ତୁଳନାରେ ଶ୍ରେଷ୍ଠ । ହାଇପେରିଦେସ୍ ରଚନା-ଶୈଳୀ ବ୍ୟତୀତ ଅନ୍ୟ ସକଳ ବିଷୟରେ ଦେମୋସ୍ଥେନେସ୍‌ଙ୍କ ସଫଳତାର କେବଳ ପ୍ରତିସ୍ପର୍ଦ୍ଧା କରି ନାହାନ୍ତି, ମାତ୍ର ତାହା ପର୍ଯ୍ୟାପ୍ତ ନୁହେଁ ହେବ ସେଥି ସଙ୍ଗେ ସେ ଲୁସିଅସ୍‌ଙ୍କ ଅନେକ ଗୁଣ ଓ ଲାବଣ୍ୟକୁ ମଧ୍ୟ ଗ୍ରହଣ କରି ନେଇଛନ୍ତି । କେତେବେଳେ ସହଜ ସ୍ୱରରେ କଥା କହିବାକୁ ପଡ଼ିବ ସେ ଭଲ ରୂପେ ଜାଣିଥିଲେ ଓ ଦେମୋସ୍ଥେନେସ୍‌ଙ୍କ ଭଳି ସବୁ ସ୍ଥାନରେ ସ୍ୱରଗ୍ରାମ ଏକା ଭଳି

ରଖିବାକୁ ଦେଉ ନଥିଲେ । ଚରିତ୍ର ଚିତ୍ରଣରେ ସେ ଉତ୍ତେଜନାପୂର୍ଣ୍ଣ ଓ ସ୍ଫୁଲିଙ୍ଗମୟ ସ୍ପର୍ଶ ଦେଇଛନ୍ତି ଓ ତହିଁରେ ଭରି ରହିଛି ଏକ ~~ଲୋନ୍ଗଲ~~-ସୌରଭ । ତା' ଛଡ଼ା ତାଙ୍କର ବାକ୍‌ଚାତୁରୀ କେତେ ଶ୍ଳାଘ୍ୟ, ରସିକତାପୂର୍ଣ୍ଣ ପରିହାସ କେତେ ମାର୍ଜିତ ! ସେ କେତେ ସମ୍ଭ୍ରାନ୍ତ, ବିଦ୍ରୂପ ପ୍ରୟୋଗରେ କେତେ ଚତୁର ! ତାଙ୍କର ପରିହାସୋକ୍ତି ଷ୍ଟଷ୍ଟ୍ଣ ; ମାତ୍ର ତହିଁରେ ନାହିଁ ପ୍ରାଚୀନ ଏଥେନ୍ସୀୟ ମିଳନାନ୍ତକ ନାଟକର ଅଶ୍ଳୀଳତା ଓ ଇତରତା । ପ୍ରତିପକ୍ଷର ଯୁକ୍ତିକୁ ଲଘୁ କରିଦେବାରେ ସେ ଅତି ଦକ୍ଷ ଓ ଏପରି ସୁନିର୍ଦ୍ଦିଷ୍ଟ ବ୍ୟଙ୍ଗୋକ୍ତିରେ ପରିପୂର୍ଣ୍ଣ ଯାହା ଦଂଶନ କରିବା ସଙ୍ଗେ ଆମୋଦିତ କରେ । ଏ ସବୁ ମଧ୍ୟରେ ସମଗ୍ର ରଚନାରେ ପରିବ୍ୟାପ୍ତ ହୋଇ ରହିଛି ଏକ ଅନୁପମ ଚମତ୍କୃତି । କରୁଣା ଉଦ୍ରେକ କରିବାରେ ସେ ଅତ୍ୟନ୍ତ ପଟୁ ; ସେ ଅତି ସହଜରେ ପୌରାଣିକ କଥାକୁ ପରିବର୍ତ୍ତନ କରି ବର୍ଣ୍ଣନା କରି ପାରନ୍ତି । କୌଣସି ପ୍ରାବଲ୍ୟ କିମ୍ବା ପ୍ରୟତ୍ନ ବିନା ବର୍ଣ୍ଣନା ମଧ୍ୟରେ ଗତି ବଦଳାଇବା ଓ ତହିଁରେ ଅନ୍ୟ ପ୍ରସଙ୍ଗ ଉତ୍‌ଥାପନ କରିବାରେ ସେ ଅତି ପାରଙ୍ଗମ । ଉଦାହରଣ ସ୍ୱରୂପ ପ୍ଲେଟୋଙ୍କ କାହାଣୀ କହିବା ବେଳେ ସେ ବସ୍ତୁତଃ ଜଣେ କବି ଓ ତାଙ୍କର ଅନ୍ତିମ-ସଂସ୍କାର ସମ୍ବନ୍ଧୀୟ ଭାଷଣ ଏତେ ଆଲଂକାରିକ ବାଗ୍ମିତାପୂର୍ଣ୍ଣ ବୈଭବ ପ୍ରଦର୍ଶନ କରେ ଯେ ତାହାର ତୁଳନା, ମୁଁ ଜାଣିବାରେ, କ୍ୱଚିତ୍ ମିଳେ । ଅନ୍ୟ ପକ୍ଷରେ, ଦେମୋସ୍ଥେନେସ୍ ଚରିତ୍ର-ଚିତ୍ରଣରେ ପଟୁ ନୁହନ୍ତି, ତାଙ୍କଠାରେ ନାହିଁ ବହୁଧା ନୈପୁଣ୍ୟ, ଅନର୍ଗଳତା ଅଥବା ହ୍ୱପେରିଦେସ୍‌ଙ୍କ ଆଲଂକାରିକ ବାଗ୍ମିତାପୂର୍ଣ୍ଣ ଦକ୍ଷତା । ବସ୍ତୁତଃ, ମୁଁ ଏବେ ଉପରେ ଉଲ୍ଲେଖ କରିଥିବା ସକଳ ଗୁଣାବଳୀରୁ ସେ ସମ୍ପୂର୍ଣ୍ଣ ବଞ୍ଚିତ । ସେ ଯେତେବେଳେ ରଙ୍ଗରସନିପୁଣ ଓ ଚାତୁର୍ଯ୍ୟପୂର୍ଣ୍ଣ ହେବାକୁ ପ୍ରବଳ ଉଦ୍ୟମ କରନ୍ତି ସେତେବେଳେ ହାସ୍ୟସୃଷ୍ଟି କରିବା ସ୍ଥଳେ ନିଜକୁ କେବଳ ଉପହସନୀୟ କରନ୍ତି ଏବଂ ହ୍ୱପେରିଦେସ୍‌ଙ୍କ ପ୍ରଭାବମୟୀ ଲାବଣ୍ୟର ସମୀପବର୍ତ୍ତୀ ହେବାକୁ ସେ ଯେତିକି ଚେଷ୍ଟା କରନ୍ତି ସେତିକି ତାଠାରୁ ଦୂରକୁ ଅପସରି ଯାʼନ୍ତି । ଉଦାହରଣ ସ୍ୱରୂପ, ସେ ଯଦି ଫ୍ରୁନେ କିମ୍ବା ଅଥେନଗୋରସ୍‌ର ପ୍ରତିରକ୍ଷା ନିମନ୍ତେ କ୍ଷୁଦ୍ର ଭାଷଣ ଲେଖିବା

ଭଳି କାର୍ଯ୍ୟରେ ବ୍ୟସ୍ତ ହୋଇଥାନ୍ତେ ତେବେ ସେ କେବଳ ନିଜ ପ୍ରତିଦ୍ୱନ୍ଦୀଙ୍କର ଯଶଃକୀର୍ତ୍ତି ବିନିର୍ମାଣରେ ସହାୟକ ହୋଇଥାନ୍ତେ । ତା ସତ୍ତ୍ୱେ ହାଇପେରାଇଦେସ୍‌ଙ୍କ ସକଳ ସୌନ୍ଦର୍ଯ୍ୟ, ପ୍ରାଚୁର୍ଯ୍ୟ ସତ୍ତ୍ୱେ ତାହାଙ୍କୁ ଉଦାତ୍ତ କରି ତୋଳି ପାରିବ ନାହିଁ । ସେ କେବେହେଲେ ଶକ୍ତିଶାଳୀ ଅନୁଭୂତି ଉପସ୍ଥାପିତ କରନ୍ତି ନାହିଁ, ତାଙ୍କର ଶକ୍ତି ସ୍ୱଳ୍ପ ଓ ସେ କୌଣସି ସମ୍ବେଗ ଜାଗ୍ରତ କରି ପାରନ୍ତି ନାହିଁ ; ନିଶ୍ଚିତ ରୂପେ ସେ ନିଜରି ପାଠକମାନଙ୍କ ହୃଦୟରେ କଦାପି ଭୟ ଉଦ୍ରେକ କରି ପାରନ୍ତି ନାହିଁ । ମାତ୍ର ଡେମୋସ୍ଥେନେସ୍ ଜଣେ ମହାନ୍ ଗୁରୁଙ୍କର (ଥୁସିଦ୍ଦିଦେସ୍) ଅନୁଗମନ କରୁଥିଲେ, ସେହି ସମୃଦ୍ଧ କୋଷରୁ ଆହରଣ କରିଥିଲେ ଓ ତାଙ୍କର ସର୍ବାଙ୍ଗସୁନ୍ଦର ଗୁଣ, ଓଜସ୍ୱୀ ବାକ୍‌ପଟୁତା, ପ୍ରାଣବନ୍ତ ଆବେଗ, ବାହୁଲ୍ୟ, ସୂକ୍ଷ୍ମ ବିଶ୍ଳେଷଣଶକ୍ତି ଓ ଗତିବେଗ—ଏପରି ଶ୍ରେଷ୍ଠତ୍ୱ ଓ ଶକ୍ତିମତ୍ତା ଯାହାର ନିକଟବର୍ତ୍ତୀ ହେବା ଅସମ୍ଭବ । ଏହି ପ୍ରବଳ ଓ ଈଶ୍ୱରଦତ୍ତ ଗୁଣାବଳୀକୁ (ମୁଁ ସେଗୁଡ଼ିକୁ ମାନବୀୟ କହିବାକୁ ସାହସ କରିପାରୁନାହିଁ) ସେ ସର୍ବାଂଶରେ ଆତ୍ମସାତ୍ କରିପାରିଥିଲେ । ସେଥିପାଇଁ ମୁଁ କହିବି, ସେ ଧାରଣ କରିଥିବା ମହତ୍ ଗୁଣଗୁଡ଼ିକ ଦ୍ୱାରା ପ୍ରତିଦ୍ୱନ୍ଦ୍ୱମାନଙ୍କ ଊର୍ଦ୍ଧ୍ୱରେ ରହିଛନ୍ତି ଓ ନିଜର ଦୁର୍ବଳତାକୁ ଆବୃତ କରି ଦେଇଛନ୍ତି ତଥା ସବୁ ଯୁଗର ବକ୍ତାମାନଙ୍କୁ ସ୍ୱକୀୟ ବଜ୍ର ନିନାଦରେ ନିସ୍ତବ୍ଧ ଓ ବିଦ୍ୟୁତ୍-ସ୍ଫୁରଣରେ ଅନ୍ଧୀଭୂତ କରି ଦେଇଛନ୍ତି । ଅଟଳ ଦୃଷ୍ଟିରେ ବିଦ୍ୟୁତ୍-ଚମକର ସମ୍ମୁଖୀନ ହେବା ତ ସହଜ ; ମାତ୍ର ତାଙ୍କର ଉତ୍ତେଜନାପୂର୍ଣ୍ଣ ବକ୍ତୃତା ଯେତେବେଳେ ଗୋଟିକ ପରେ ଗୋଟିଏ ଘାତ ଉଚ୍ଛ୍ୱାସ ପ୍ରେରଣ କରି ଲାଗିଥାଏ ସେତେବେଳେ ଅବିଚଳିତ ରୂପେ ଗ୍ରହଣ କରିବା ଅସମ୍ଭବ ।



କିନ୍ତୁ ମୁଁ ପୂର୍ବରୁ ଯାହା କହିଥିଲି, ପ୍ଲେଟୋ ଓ ଲୁସିଅସ୍‌ଙ୍କ ମଧ୍ୟରେ ଆଉ ଏକ ପାର୍ଥକ୍ୟ ରହିଛି । କେବଳ ଗୁଣୋତ୍କର୍ଷ ଦୃଷ୍ଟିରୁ ନୁହେଁ, ଗୁଣ-ସଂଖ୍ୟା

ଦୃଷ୍ଟିରୁ ମଧ୍ୟ ଲୁସିଅସ ପ୍ଳେଟୋଙ୍କଠାରୁ ଅତ୍ୟନ୍ତ ନିକୃଷ୍ଟତର । ତତ୍ ସଙ୍ଗେ ସେ ପ୍ଳେଟୋଙ୍କ ଗୁଣାବଳୀର ଯେଉଁପରି ବହୁ ପଶ୍ଚାଦ୍‌ବର୍ତ୍ତୀ, ସେହିପରି ଦୋଷସମୂହ କ୍ଷେତ୍ରରେ ମଧ୍ୟ ସେ ତାଙ୍କଠାରୁ ବହୁତ ଅଗ୍ରବର୍ତ୍ତୀ ।

ତା ହେଲେ ଅତୀତର ସେହି ଶକ୍ତିଧର ଲେଖକମାନଙ୍କ ସମ୍ମୁଖରେ ଏପରି କେଉଁ ସତ୍ୟ ବିଦ୍ୟମାନ ଥିଲା ଯେ ସେମାନେ ରଚନାର ଯାହା ମହାନ୍ ଗୁଣ ତାହା ଉପରେ ଲକ୍ଷ୍ୟ ସ୍ଥିର ରଖି ସର୍ବାତିଶାୟୀ ବିଶୁଦ୍ଧତାକୁ ଅନୁଦ୍ଧେକ୍ଷ୍ୟ ସ୍ୱୀକାର କଲେ ? ଅନ୍ୟ ବହୁ ବିଷୟ ମଧ୍ୟରୁ ବିଶେଷତଃ ଗୋଟିଏ କଥା ଏଇ ଯେ, ପ୍ରକୃତିର ପରିକଳ୍ପନାରେ ନ ଥିଲା, ତାହାର ମନୋନୀତ ସନ୍ତାନ ମାନବ ମାନଙ୍କୁ ନୀଚ ଓ ଜଘନ୍ୟ ଜନ୍ତୁ କରି ଗଢ଼ିବ—କଦାପି ନୁହେଁ । ସେ ଆମକୁ ଜୀବନ ଦେଲା, ବିରାଟ ବିଶ୍ୱ ବକ୍ଷରେ ଆଣି ଛାଡ଼ିଦେଲା, କୌଣସି ଏକ ମହାରଙ୍ଗ ଭୂମିରେ ପ୍ରବେଶ କରାଇ ଦେଲା ପରି, ତା'ର ଉଦ୍ଦେଶ୍ୟ ହେଲା ଯେ, ଆମେ ସେଇ ମୁହୂର୍ତ୍ତରେ ତା'ର ମହତ୍ ଅବଦାନର ଦର୍ଶକ ଓ ଉଚ୍ଚାଭିଳାଷୀ ପ୍ରତିଦ୍ୱନ୍ଦ୍ୱୀ ହେଉଁ । ପ୍ରାରମ୍ଭରୁ ସେ ଆମ ଆତ୍ମାରେ ରୋପଣ କରିଦେଲା ଆମଠାରୁ ଯାହାକିଛି ବିରାଟତର, ଯାହାକିଛି ଦିବ୍ୟ—ସେ ସମସ୍ତ ପାଇଁ ଏକ ଦୁର୍ଜ୍ଜୟ ଉତ୍ସୁକତା । ସେଥିପାଇଁ ସମଗ୍ର ବିଶ୍ୱ ମଧ୍ୟ ମାନବ-ଭାବନାର ଉଚ୍ଚା-କାଶରେ ଉଡ଼୍‌ଡ଼୍ୟନର ପରିସର ନିମନ୍ତେ ପ୍ରଶସ୍ତ ନୁହେଁ ; ମାତ୍ର ମାନବର ମନ ସର୍ବଦା ମହାକାଶର ସୀମା ଅତିକ୍ରମ କରିଯାଏ । ଆମେ ଯେତେବେଳେ ସମଗ୍ର ଜୀବନ-ଚକ୍ରକୁ ଅବଲୋକନ କରୁ, ଦେଖିବାକୁ ପାଉଁ ଯେ, ଏହା ସର୍ବତ୍ର ଶୋଭାସମ୍ପନ୍ନ, ମହାନ୍ ଓ ସୁନ୍ଦର ବସ୍ତୁରେ ପରିପୂର୍ଣ୍ଣ, ତତ୍‌କ୍ଷଣାତ୍ ଆମେ ମାନବ ଜନ୍ମର ପ୍ରକୃତ ଅଭିପ୍ରାୟ ସମ୍ବନ୍ଧରେ ଅବଗତ ହେଉଁ । ଏଥି ପାଇଁ କୌଣସି କ୍ଷୁଦ୍ର ନିର୍ଝରିଣୀର ନିର୍ମଳତା ଓ ଉପଯୋଗିତାକୁ ନୁହେଁ ; ମାତ୍ର ନୀଳନଦୀ, ଦାନ୍ୟୁବ୍, ରାଇନ୍ ଓ ସର୍ବୋପରି ମହାସମୁଦ୍ରର ପ୍ରଶଂସାଗାନ କରିବା ପାଇଁ ପ୍ରକୃତି ଆମକୁ ଉତ୍ସାହିତ କରେ ; ସେହିପରି ସ୍ୱର୍ଗୀୟ ଜ୍ୱାଳା-ମାଳା ସର୍ବଦା ଅନ୍ଧକାରରେ ଆବୃତ ହେଲେ ମଧ୍ୟ ତା'ଠାରୁ ଆମର ଚଞ୍ଚଳ ଦୃଷ୍ଟି ଅପସାରିତ କରି ଯେତେ ପାବନ ଓ ଅଚଞ୍ଚଳ ହେଲେ ମଧ୍ୟ ମାନବ

ହସ୍ତରେ ଚିହ୍ନିତ କ୍ଷୁଦ୍ର ଅଲୋକଶିଖା ପ୍ରତି ଦୃଷ୍ଟି ଦେଇ ନ ଥାଉଁ । ସେହି କ୍ଷୁଦ୍ର ଦୀପଗୁଡ଼ିକୁ ଆମେ ସ୍ୱର୍ଗର ତାରକା ଅପେକ୍ଷା ଅଧିକ ବିସ୍ମୟକର ମନେ କରି ନ ଥାଉଁ,—ଯାହାର ଆଗ୍ନେୟଗିରିର ଅତଳ ହୃଦୟରୁ ନିକ୍ଷିପ୍ତ ହୁଏ ପ୍ରକାଣ୍ଡ ଶିଳାଖଣ୍ଡ ଓ ପ୍ରସ୍ତରଖଣ୍ଡ, ଆଉ ବେଳେ ବେଳେ ପୃଥିବୀର କେନ୍ଦ୍ରସ୍ଥଳରୁ ପ୍ରବାହିତ ହୁଏ ଜୀବନ୍ତ ଓ ବିଶୁଦ୍ଧ ଅଗ୍ନିର ପ୍ରବଳ ପ୍ରବାହ ।

ଏ ସମସ୍ତର ନିଷ୍କର୍ଷ ହେଲା—ଯାହା କିଛି ଉପଯୋଗୀ ଅଥବା ଦରକାରୀ, ତାହା ସହଜରେ ମନୁଷ୍ୟର ଆୟତ୍ତ ମଧ୍ୟରେ ରହିଥାଏ ; ମାତ୍ର ଯାହା ଅଭାବ ବିସ୍ମୟକର, ତାହାପାଇଁ ସେ ନିଜର ଭକ୍ତିଭାବ ସଂପାଦ ରଖିଥାଏ ।

୩୬

ଉଦାତ୍ତ ସମ୍ବନ୍ଧୀୟ ଏଇ ସିଦ୍ଧାନ୍ତ ଗୁଡ଼ିକ ସାହିତ୍ୟରେ କେତେ ଦୂର ପ୍ରୟୋଗ କରଯାଇ ପାରେ ? ପ୍ରକୃତରେ ବେଳେବେଳେ ଯେପରି ଘଟିଥାଏ ସାହିତ୍ୟରେ ଗରିମା ଉପଯୋଗିତା ଓ ହିତ ଠାରୁ କେବେ ବିଯୁକ୍ତ ହୋଇ ନଥାଏ । ତେଣୁ ଯେଉଁମାନେ ଏହାକୁ ସଫଳରୂପେ ସାଧନ କରିପାରିଛନ୍ତି, ନିର୍ଦ୍ଦୋଷତାଠାରୁ ଯେତେ ଦୂରରେ ଥିଲେ ମଧ୍ୟ ସେମାନେ ନଶ୍ୱରମାନଙ୍କଠାରୁ ଊର୍ଦ୍ଧ୍ୱରେ ଅବସ୍ଥାନ କରନ୍ତି । ଅନ୍ୟ କୌଣସି ସାଧନ ପ୍ରୟୋଗ କରୁଥିବା ଲେଖକ ସାଧାରଣ ମଣିଷଟିଏ ଭଳି ଦେଖା ଦିଅନ୍ତି ; ମାତ୍ର ଔଦାତ୍ତ୍ୟ ଲେଖକଙ୍କୁ ସ୍ରଷ୍ଟାଙ୍କର ମହାନ୍ ଆତ୍ମାର ସମୀପକୁ ଉତ୍ତୋଳିତ କରିନିଏ । ନିର୍ଦ୍ଦୋଷ ଲେଖକ ହୁଏ ତ ସମାଲୋଚନାରୁ ବର୍ତ୍ତିଯାଇ ଆତ୍ମସନ୍ତୋଷ ଲଭ କରି ପାରନ୍ତି ; ମାତ୍ର ଉଦାତ୍ତ-ଲେଖକ ପ୍ରତ୍ୟକ୍ଷ ସମ୍ମାନ ଦାବୀ କରନ୍ତି । ଏହାପରେ ମୋତେ ଆଉ କହିବାକୁ ପଡ଼ିବ ନାହିଁ ଯେ, ସେଇ ମହାନ୍ ଲେଖକମାନଙ୍କ ମଧ୍ୟରୁ ପ୍ରତ୍ୟେକେ ଉଦାତ୍ତର ଏକମାତ୍ର ମହା-ବିଚକ୍ଷଣ ଦୃଷ୍ଟିରେ

ପ୍ରାୟ ନିଜର ସମସ୍ତ ତ୍ରୁଟି ସଂଶୋଧନ କରି ଦିଅନ୍ତି । ମାତ୍ର ସବୁଠାରୁ ବୈଶିଷ୍ଟ୍ୟପୂର୍ଣ୍ଣ ବିଷୟ ହେଲା ଏଇ ଯେ, ତୁମେ ଯଦି ହୋମର, ଡେମୋସ୍ଥେନେସ୍, ପ୍ଳେଟୋ ଓ ସାହିତ୍ୟର ସକଳ ତୁଙ୍ଗତମ ଲେଖକଙ୍କର ଦୋଷସମୂହ ସଂଗ୍ରହ କରି ଏକତ୍ର କର ତେବେ ସେଥିରୁ ପ୍ରମାଣିତ ହେବ ଏଇ ପରମ ଅତ୍ୟୁର୍ଯ୍ୟଗଣ ନିରପେକ୍ଷ ପରାକାଷ୍ଠା ଅର୍ଜ୍ଜନ କରିଥିବା କ୍ଷେତ୍ର ତୁଳନାରେ ସେ ସମସ୍ତ ଅତି ନଗଣ୍ୟ ଅଥବା କ୍ଷୁଦ୍ରାତିକ୍ଷୁଦ୍ର ଅନୁପାତ କହିଲେ ଚଳେ । ଏଥିଯୋଗୁ ସକଳ ଉତ୍ତରପୁରୁଷଗଣ ଯାହାଙ୍କର ବାଗ୍ମିତରେ ଦୋଷ ଦର୍ଶନ ପାଇଁ ସ୍ୱୟଂ ଈର୍ଷା ମଧ୍ୟ ଅସମର୍ଥା, କୀର୍ତ୍ତି-କିରୀଟ ଆଣି ସେମାନଙ୍କୁ ଅର୍ପଣ କରିଛନ୍ତି, ଆଜି ପର୍ଯ୍ୟନ୍ତ ସମସ୍ତ ଆକ୍ରମଣରୁ ସେମାନଙ୍କର ଯଶରେ ସୁରକ୍ଷା କରି ଆସିଛନ୍ତି ଓ ବିଶ୍ୱାସ ହୁଏ ସେ ପର୍ଯ୍ୟନ୍ତ ନିରାପଦ ରଖିବେ—

"ବହିବ ଯାବତ ଅଶାନ୍ତ ଜଳରାଶି ସିନ୍ଧୁମୁଖେ
ଆଉ ତୁଙ୍ଗ ବୃକ୍ଷରାଜି ହେବେ କ୍ରମ ବର୍ଦ୍ଧମାନ"

ଜଣେ ଲେଖକ ଖୁବ୍ ଜୋର ଦେଇ କହନ୍ତି ଯେ, ଆମେ ପୋଲିକ୍ଲେଟସ୍‌ଙ୍କ ଭଲ୍ଲଧାରୀ ମୂର୍ତ୍ତି ଡୋରିଫୋରସ୍‌ଠାରୁ ବିଶାଳ ସାମଞ୍ଜସ୍ୟହୀନ ଅତିକାୟ ମାନବ ମୂର୍ତ୍ତି କଲୋସସ୍‌କୁ ଉଚ୍ଚସ୍ଥାନ ଦେବା ଉଚିତ ନୁହେଁ । ମାତ୍ର (ବହୁ ସମ୍ଭାବିତ ଉତ୍ତର ମଧ୍ୟରୁ ଗୋଟିଏ ଦେଲେ ଚଳିବ) ଆମେ କଳାରେ ବିଶୁଦ୍ଧତା ଓ ପ୍ରାକୃତିକ ସୃଷ୍ଟିରେ ବିଶାଳତାର ପ୍ରଶଂସା କରିଥାଉଁ ; ଆଉ ପ୍ରକୃତିରୁହିଁ ମାନବ ବାକ୍‌ଶକ୍ତି ଅର୍ଜ୍ଜନ କରେ । ଏହାଛଡ଼ା ମୂର୍ତ୍ତିକଳାରେ ଆମେ ମାନବ ପ୍ରକୃତି ସହ ଘନିଷ୍ଠ ସାଦୃଶ୍ୟ ପ୍ରତ୍ୟାଶା କରୁ ; ମାତ୍ର ସାହିତ୍ୟରେ ଆମେ ଏପରି କିଛି 'ଚାହୁଁ' ଯାହା ମାନବ ପ୍ରକୃତିକୁ ଅତିକ୍ରମ କରିଯାଏ । ତା ହେଲେ ମଧ୍ୟ (ଏଇ ସନ୍ଦର୍ଭର ପ୍ରାରମ୍ଭରେ ଦେଇଥିବା ଉପଦେଶର ପୁନରାବୃତ୍ତି କରି କହିବି) ଯେ ହେତୁ ଦୋଷ ପରିହାର କରିବା ରୂପକ ସାଫଲ୍ୟ ସାଧାରଣତଃ କଳାର ଦାନ ଓ ଉତ୍କର୍ଷସୂଚକ ଗୁଣ ଯେତେ ଅସମ ହେଲେ ମଧ୍ୟ ପ୍ରତିଭାର ନୈସର୍ଗିକ ଧର୍ମ, ସେଥିପାଇଁ

ସବୁ କ୍ଷେତ୍ରରେ କଳାକୁ ପ୍ରକୃତିର ସହଯୋଗୀ ରୂପେ ନିମନ୍ତ୍ରଣ କରି ଆଣିବା ସମୀଚୀନ । ଏ ଦୁହିଁଙ୍କର ମିଳିତ ପ୍ରଚେଷ୍ଟାରେ ହିଁ ଆମେ ସିଦ୍ଧିଲାଭ କରିବା ନିମନ୍ତେ ଆଶାପ୍ରାର୍ଥୀ ହୋଇପାରୁ ।

ଆଲୋଚ୍ୟ ବିଷୟରେ ଉପର୍ଯ୍ୟୁକ୍ତ ସିଦ୍ଧାନ୍ତରେ ଉପନୀତ ହେବାକୁ ମୁଁ ବାଧ୍ୟ ହେଉଛି ; ମାତ୍ର ପ୍ରତ୍ୟେକ ବ୍ୟକ୍ତି ସ୍ୱ ସ୍ୱ ରୁଚିର ପରାମର୍ଶ ଗ୍ରହଣ କରି ପାରନ୍ତି ।

୩୨

ଯାହାହେଉ, ଏହି ଦୀର୍ଘ ଆଲୋଚନା ପରେ ଆମେ ପୁଣି ମୂଳ ବିଷୟକୁ ଫେରି ଆସିବା—ରୂପକ ସହିତ ତୁଳନା ଓ ଉପମା ଘନିଷ୍ଠ ଭାବେ ସମ୍ବନ୍ଧାନ୍ୱିତ, କେବଳ ଏତିକି ଯାହା ପାର୍ଥକ୍ୟ *........

୩୩

ଏତାଦୃଶ ଅସଙ୍ଗତ ଉକ୍ତି, ଯଥା, "ଯେ ପର୍ଯ୍ୟନ୍ତ ତୁମେ ତୁମର ମସ୍ତିଷ୍କକୁ ମାଟିରେ ଲଗାଇ ନିଜର ଗୋଇଠିରେ ମାଡ଼ି ନ ଚାଲିଛ" । ଏଣୁ କେଉଁଠି ସୀମା ନିର୍ଦ୍ଧାରଣ କରିଦେବ ଏହା ଜାଣିବା ନିତାନ୍ତ ଆବଶ୍ୟକ, କାରଣ ଏଇ ସୀମାକୁ ଯଦି କେବେ ଅତିକ୍ରମ କରିଯାଏ, ତେବେ ଅତି-ଶୟୋକ୍ତି ଅଳଂକାରର ଗୁଣ ନଷ୍ଟ ହୋଇଯାଏ । ଏ ସବୁ କ୍ଷେତ୍ରରେ ଅତ୍ୟଧିକ ରୂପ ପ୍ରୟୋଗ ଦ୍ୱାରା ଶିଥିଳ ହୋଇଯିବା ହେତୁ ଅଭିଲଷିତ ପ୍ରଭାବଠାରୁ ସମ୍ପୂର୍ଣ୍ଣ ବିପରୀତ ଅଭିପ୍ରାୟ ବ୍ୟକ୍ତ କରେ । ଉଦାହରଣ ସ୍ୱରୂପ, ଇସୋକ୍ରେଟିସ୍ ପ୍ରତ୍ୟେକ ବସ୍ତୁକୁ ଏକ ପ୍ରକାର ବହଳ ଆଳଂକାରିକ ପ୍ରଲେପ

*ମୂଳ ପ୍ରବନ୍ଧରେ ଏଇ ଅଂଶ ଅପୂର୍ଣ୍ଣ ରହିଛି ।

ଦେବାର ମହତ୍ତ୍ୱାଭିଳାଷ ହେତୁ ବାଳେୟଧର୍ମୀ ରୂପେ ଦେଖା ଦେଉଛନ୍ତି । ତାଙ୍କର ପ୍ରଶସ୍ତି ଭିତ୍ତିକ ଉଦ୍‌ବୋଧନରେ ସେ ପ୍ରମାଣ କରିବାକୁ ଯାଉଛନ୍ତି ଯେ ଗ୍ରୀସ୍‌ର ସେବାରେ ସ୍ପାର୍ଟା ଅପେକ୍ଷା ଏଥେନ୍ସ ରାଜ୍ୟର ଦାନ ଅଧିକ । ମାତ୍ର ଭାଷଣର ପ୍ରାରମ୍ଭରେ ସେ ପୁଣି ଏକଥା କହିବାକୁ ଲାଗିଛନ୍ତି—"ଭାଷାର ଶକ୍ତି ଏତେ ଯେ ତାହା ବିରାଟ ବସ୍ତୁକୁ ଲଘୁ କରିଦେଇ ପାରେ ଓ ସାମାନ୍ୟ ବସ୍ତୁକୁ ବିରାଟତ୍ୱ ପ୍ରଦାନ କରିପାରେ ; ସେହିପରି ଜରାଜୀର୍ଣ୍ଣ ବସ୍ତୁକୁ ପ୍ରାଣବନ୍ତ କରିଦେଇପାରେ ଓ ଯାହା ଆଧୁନିକ ତାହାକୁ ଏପରି ବର୍ଣ୍ଣନା କରିପାରେ ଯେ ତାହା ଅତୀତର ଭଳି ପ୍ରତୀୟମାନ ହୁଏ ।" ଏଠାରେ ପ୍ରଶ୍ନ ହୋଇପାରେ, ହେ ଇସୋକ୍ରେଟସ୍, ଏଇ ଉପାୟରେ ତୁମେ ସ୍ପାର୍ଟା ଓ ଏଥେନ୍ସ ସମ୍ପର୍କୀୟ ବିବରଣୀର ଅସାଧୁ ପରିବର୍ତ୍ତନ କରିବାକୁ ଚାହୁଁଛ ? ଭାଷାର ଶକ୍ତି ସମ୍ପର୍କରେ ଏହି ବଢ଼େଇ କରି କହିବା ଏକ ସଙ୍କେତ ସମ୍ବାଦ ଭଳି । ଏହା ଦ୍ୱାରା ସେ ଶ୍ରୋତାମାନଙ୍କୁ ସତର୍କ କରି ଦେଉଛନ୍ତି ସେମାନେ ଯେପରି ତାଙ୍କୁ ବିଶ୍ୱାସ ନ କରନ୍ତି । ଅଳଂକାର ପ୍ରସଙ୍ଗରେ ଯାହା କୁହାଯାଇ ଥିଲା ସେ କଥାକୁ ଆମେ ଏଠାରେ ପୁଣି ଉଦ୍ଧାର କରି ପାରିବୁ । ଆମର ବକ୍ତବ୍ୟ ହେଲା, ଅତିଶୟୋକ୍ତି ସେତିକିବେଳେ ଅଧିକ ହୃଦୟଗ୍ରାହୀ ହୁଏ, ଯେତେବେଳେ ତାହା ଛଦ୍ମ ରୂପରେ ଆତ୍ମପ୍ରକାଶ କରେ । ଏହି ପରିଣାମ ସେତିକିବେଳେ ଆସେ ଯେତେବେଳେ ଜଣେ ଲେଖକ ଶକ୍ତିଶାଳୀ ଅନୁଭୂତି ଦ୍ୱାରା ପ୍ରଣୋଦିତ ହୋଇ କୌଣସି ଦାରୁଣ ବିପଦ କାଳରେ ଚହି ଚହି କଥା କହନ୍ତି—ଯେଉଁପରି ସିସିଲିରେ ଗଣହତ୍ୟା ବର୍ଣ୍ଣନା କରିବା ବେଳେ ଥୁସିଡିଦେସ୍ କରିଛନ୍ତି । ସେ କହିଛନ୍ତି, "ସୁରାକୁସୀୟମାନେ ସେମାନଙ୍କ ପଛେ ପଛେ ଧାଇଁଲେ ଓ ଯେଉଁମାନେ ବିଶେଷତଃ ନଦୀଗର୍ଭରେ ଥିଲେ ସେମାନଙ୍କୁ ହତ୍ୟା କଲେ । ଏଥିରେ ଜଳ ତତ୍‌କ୍ଷଣାତ୍ ଦୂଷିତ ହୋଇଗଲା ; ତଥାପି ପଙ୍କ ଓ ମୁଣ୍ଡା ମୁଣ୍ଡା ରକ୍ତ ମିଶ୍ରିତ ଏହି ଜଳକୁ ସେମାନେ ପାନ କରି ଲାଗିଲେ, ଏପରିକି ସେମାନଙ୍କ ମଧ୍ୟରୁ ଅଧିକାଂଶ ତା ପାଇଁ ବିବାଦ କରିବାକୁ ଲାଗିଲେ ।" ପଙ୍କ ଓ ରକ୍ତ ପାନ ତଥା ତା' ପାଇଁ ପୁଣି ଯୁଦ୍ଧ କରିବା ବର୍ଣ୍ଣିତ ଦୃଶ୍ୟର ଭୟାବହ ଆତଙ୍କ ଭାବ

ଦ୍ୱାରା ବିଶ୍ୱାସଯୋଗ୍ୟ ହୋଇ ପାରିଛି । ଥର୍ମୋପେଲି ଯୁଦ୍ଧରେ ମୃତ୍ୟୁବରଣ କରିଥିବା ଯୋଦ୍ଧାମାନଙ୍କ ବିଷୟରେ ହେରୋଡୋଟସ୍ ସେହିପରି ବର୍ଣ୍ଣନା କରିଛନ୍ତି—"ଏହି ସ୍ଥାନରେ, ଯେଉଁମାନଙ୍କ ପାଖରେ ସେ ପର୍ଯ୍ୟନ୍ତ କଟାରି ରହିଥିଲା, ସେମାନେ କଟାରିରେ, ଆଉ ଅନ୍ୟମାନେ ହସ୍ତ ଓ ଦନ୍ତ ସାହାଯ୍ୟରେ ପ୍ରତିରୋଧ କରିବାରୁ, ବର୍ବରମାନେ ସେମାନଙ୍କୁ ବର୍ଚ୍ଛାରେ ପୋତି ପକାଇଲେ ।" ଏଠାରେ ସେମାନଙ୍କର ଗୁରୁ – ଅସ୍ତ୍ରଧାରୀ ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ଦାନ୍ତରେ ସଂଗ୍ରାମ କରିବା ଓ ସେମାନଙ୍କୁ ବର୍ଚ୍ଛାରେ ପୋତି ଦିଆଯିବା ଆଦି ଉକ୍ତି ଚେଷ୍ଟାକୃତ ହୋଇପାରେ ; ମାତ୍ର ଅବିଶ୍ୱାସ୍ୟ ନୁହେଁ—ପୂର୍ବରୁ ଏହାର କାରଣ ଆଲୋଚିତ ହୋଇ ସାରିଛି । ଆମେ ଦେଖି ପାରିବା ଯେ ଏହି ବ୍ୟାପାର ଗୁଡ଼ିକୁ ଅତିଶୟୋକ୍ତି ଅଳଂକାର ସୃଷ୍ଟି ପାଇଁ ବଳ ପ୍ରୟୋଗ ଦ୍ୱାରା ଟାଣି ଅଣାଯାଇ ନାହିଁ, ବରଂ ଅତିଶୟୋକ୍ତି ଅଳଂକାର ବ୍ୟାପାର ଗୁଡ଼ିକରୁ ସ୍ୱାଭାବିକ ଭାବରେ ଉଦ୍‌ଭୂତ ହୋଇଛି । କାରଣ ମୁଁ ଯେପରି ସବୁବେଳେ କହି ଆସିଛି, ଆବିଷ୍ଟତାର ସୀମାରେ ଉପନୀତ ହୋଇ-କାର୍ଯ୍ୟ ଓ ଆବେଗ ଭାଷାର ଯେ କୌଣସି ସ୍ୱେଚ୍ଛାଗ୍ରହତାକୁ ମାର୍ଜନା ଓ ଲାଘବ କରିଦେବା ପାଇଁ ସମର୍ଥ । ଏଥିପାଇଁ କେତେକ ହାସ୍ୟୋଦ୍ଦୀପକ ଅମିତାଗ୍ରହ ଯେତେ ଅସମ୍ଭବ ପ୍ରକଟିତ ହେଲେ ମଧ୍ୟ କୌତୁକ ଦ୍ୱାରା ବିଶ୍ୱାସଜନକ ହୋଇଥାଏ ; ଯଥା—

ଖେତ ଖଣ୍ଡେ ଥିଲା ତା'ର, ଅତି କ୍ଷୁଦ୍ର ଖେତ,
ବିସ୍ତାର ଯାହାର ନିତାନ୍ତ ସାମାନ୍ୟ
ସାଉଁଟାରୁ ପ୍ରେରିତ କ୍ଷେପଣଠାରୁ ଆକାରରେ ଅଳ୍ପତର ତା ମାନ ।

କାରଣ କୌତୁକ ମଧ୍ୟ ବିଭିନ୍ନ ଆବେଗ ମଧ୍ୟରୁ ଅନ୍ୟତମ ଓ ଆନନ୍ଦ ଏହାର ଆଧାର । ଅତିଶୟୋକ୍ତିର ପ୍ରୟୋଗ ବୃଦ୍ଧି କିମ୍ବା ହ୍ରାସ ନିମନ୍ତେ କରାଯାଇଥାଏ । କାରଣ ଉଭୟବିଧ ପ୍ରୟୋଗ କ୍ଷେତ୍ରରେ ଅତିରଂଜନ ହିଁ ସାଧାରଣ ରୂପେ ବିଦ୍ୟମାନ ଥାଏ । ଏହି ଭାବେ କୌଣସି ପ୍ରତିପକ୍ଷର ଯୁକ୍ତିର

ଗୁରୁତ୍ୱ କମାଇ ଦେଇ ଆମେ ତାହାକୁ ଆହୁରି ଶ୍ରେଷ୍ଠ ରୂପ ଦେଖାଇ ଦେବାକୁ ଚାହିଁଥାଉ ।



ସ୍ନେହାସ୍ପଦ ମହାଶୟ, ଆରମ୍ଭରେ ଉଦାତ୍ତର ସିଦ୍ଧି ନିମନ୍ତେ ସହାୟକ ଯେଉଁ ଉପସ୍ଥଗୁଡ଼ିକୁ ଆମେ ଉଲ୍ଲେଖ କରିଥିଲେ ତହିଁରୁ ପଞ୍ଚମଟିକୁ ତଥାପି ଆହୁରି ଆଲୋଚନା କରି ନାହାନ୍ତି—ତାହା ହେଲା, ଏକ ନିର୍ଦ୍ଦିଷ୍ଟ ବ୍ୟବସ୍ଥା ଅନୁସାରେ ଶବ୍ଦମାନଙ୍କର ବିନ୍ୟାସ । ଏ ବିଷୟରେ ବିସ୍ତାରିତ ରୂପେ ଆଲୋଚନା ସହ ମୋର ଦୁଇ ଖଣ୍ଡି ଗ୍ରନ୍ଥ ପ୍ରକାଶ ପାଇ ସାରିଛି । ଏ ଯାବତ୍ ଆମର ଅନୁସନ୍ଧାନ ଅନ୍ତତଃ ପକ୍ଷେ ଯେଉଁ ଭାବେ ଗତି କରୁଛି, ତାହାକୁ ଦୃଷ୍ଟିରେ ରଖି ବର୍ତ୍ତମାନର ଅନୁସନ୍ଧାନ ନିମନ୍ତେ ଏତିକି କହିଲେ ଯଥେଷ୍ଟ ହେବ ଯେ, ସାମଞ୍ଜସ୍ୟ ଏପରି ଏକ ସାଧନ ଯାହା କେବଳ ପ୍ରଭାବିତ ଓ ଆନନ୍ଦ ଦାନ କରେ ନାହିଁ, ମନୁଷ୍ୟର ଆତ୍ମାକୁ ଉନ୍ନତ ଓ ହୃଦୟକୁ ଆନ୍ଦୋଳିତ କରିଦେବାର ନୈସର୍ଗିକ ଶକ୍ତି ମଧ୍ୟ ଧାରଣ କରେ । ଉଦାହରଣ ସ୍ୱରୂପ, ବଂଶୀଧ୍ୱନି ଶ୍ରୋତା ହୃଦୟରେ କେତେଗୁଡ଼ିଏ ଭାବ ଉଦ୍ରେକ କରି ତାହାକୁ ଆତ୍ମବିଭୋର ଓ ଇନ୍ଦ୍ରିୟ-ସୁଖାତ୍ମକ ଆବିଷ୍ଟତାରେ ପରିପୂର୍ଣ୍ଣ କରିଦିଏ ; ସଙ୍ଗୀତ ପ୍ରତି ଶ୍ରୋତା ହୃଦୟରେ କୌଣସି ରୁଚି ନଥିଲେ ମଧ୍ୟ ଏକ ପ୍ରକାର ଛନ୍ଦାୟିତ ଧ୍ୱନି ଦ୍ୱାରା ତାଳ ସହିତ ଗତି କରିବା ପାଇଁ ଓ ନିଜର ଭାବଭଙ୍ଗୀକୁ ତାଳ ସହିତ ସମାନ କରି ନେବା ପାଇଁ ବାଧ୍ୟ କରେ । ସେହିପରି ଆମେ ଜାଣନ୍ତି, ବୀଣା ସ୍ୱରରେ କୌଣସି ଅର୍ଥ ନଥିଲେ ହେଁ ସ୍ୱରର ପରିବର୍ତ୍ତନ ତାନର ପରସ୍ପର ସମ୍ପର୍କ ଓ ଧ୍ୱନିସାମର୍ଥ୍ୟ ଅନୁସାରେ ସେଗୁଡ଼ିକର ସମନ୍ୱୟ ଦ୍ୱାରା ଶ୍ରୋତା ଉପରେ ସର୍ବଦା ଏକ ବିସ୍ମୟକର ବିମୋହନ ପ୍ରଭାବ ପକାଇଥାଏ—ଯଦିଓ ଏଗୁଡ଼ିକ ଛାୟା ଓ ପ୍ରବର୍ତ୍ତନାର କୃତ୍ରିମ ଅନୁକରଣ ମାତ୍ର—ମୁଁ ଯେପରି ପୂର୍ବରୁ କହି ସାରିଛି, ମାନବ-ସ୍ୱଭାବର ଅକୃତ୍ରିମ ପ୍ରକାଶ ନୁହେଁ । ମାତ୍ର ରଚନା

(ଯାହା ଭାଷାର ଏକ ପ୍ରକାର ସ୍ୱର ସାମଞ୍ଜସ୍ୟ ଓ ପ୍ରକୃତ ଆମକୁ ଯାହାକୁ ଶିଖାଇଥାଏ ତଥା ଯାହା ଆମର କର୍ଣ୍ଣେନ୍ଦ୍ରିୟ ମଧ୍ୟରେ କେବଳ ନୁହେଁ, ଆମର ଅସ୍ଥିରେ ମଧ୍ୟ ପ୍ରବେଶ କରେ) ଛନ୍ଦ, ଶବ୍ଦ, କାର୍ଯ୍ୟ, ସୌନ୍ଦର୍ଯ୍ୟ ଓ ସୁମଧୁର ସଙ୍ଗୀତର ବହୁବିଧ ରୂପରେ ଅଭିବ୍ୟକ୍ତ କରିଥାଏ—ଏ ସମସ୍ତ ଆମ ଭିତରେ ନିମଜ୍ଜିତ ଓ ଘନିଷ୍ଠ ସମ୍ବନ୍ଧଯୁକ୍ତ । ଏହା ନିଜର ବହୁବିଧ ସ୍ୱରରେ ମିଶ୍ରଣ ଦ୍ୱାରା ବକ୍ତାଙ୍କଠାରେ ଥିବା ଭାବକୁ ଶ୍ରୋତାମାନଙ୍କ ମନରେ ସଞ୍ଚାରିତ କରିଦିଏ ଓ ଶ୍ରୋତାକୁ ସେଇ ଅନୁଭୂତି ସହିତ ସର୍ବଦା ସମାନ-ହୃଦୟ ହେବାକୁ ପ୍ରସ୍ତୁତ କରାଏ ତଥା ପଦସମୂହର ସହ-ସଂଯୋଗ ଦ୍ୱାରା ସର୍ବଶେଷରେ ଏକ ମହତ୍ତ୍ୱପୂର୍ଣ୍ଣ ଓ ସୁଶ୍ରାବ୍ୟ ରଚନା ଗଢ଼ି ଉଠେ । ଏ ସମସ୍ତ ଦୃଷ୍ଟିରୁ ଆମକୁ ସ୍ୱୀକାର କରିବାକୁ ପଡ଼ିବ ଯେ ଯେଉଁଠି ଆମେ ଏହି ସାମଞ୍ଜସ୍ୟ ବିଧାନର ସମ୍ମୁଖୀନ ହେଉଁ ସେଠାରେ ତାହା ଆମକୁ ସମ୍ମୋହିତ କରେ ଓ ଆଡ଼ମ୍ବର, ଗରିମା, ଔଦାତ୍ତ୍ୟ ତଥା ଅନ୍ୟ ଯେଉଁସବୁ ଭାବ ତହିଁରେ ନିହିତ ତଦ୍ୱାରା ଆମ ଅନ୍ତରକୁ ପରିପୂର୍ଣ୍ଣ କରିଦିଏ ଓ ଏ ସମସ୍ତ ଦ୍ୱାରା ଆମ ମନ ଉପରେ ସମ୍ପୂର୍ଣ୍ଣ କର୍ତ୍ତୃତ୍ୱ ଲାଭ କରେ । ଯେଉଁ ସତ୍ୟ ଏତେ ସାର୍ବଜନୀନ ରୂପେ ସ୍ୱୀକୃତ ତର୍କର ଅତୀତ ରୂପେ ଅନୁଭୂତିସିଦ୍ଧ ସେ ବିଷୟରେ ବିବାଦ କରିବା ମୂଢ଼ତା ମାତ୍ର ।

ଏ ବିଷୟରେ ଗୋଟିଏ ଉଦାହରଣ ଦେମୋସ୍ଥେନେସ୍‌ଙ୍କ ଆଦେଶ ନାମାରେ ପ୍ରୟୋଗ କରଯାଇଥିବା ସେହି ଭାବନା ନିଶ୍ଚିତ ରୂପେ ଉଦାତ୍ତ, ବାସ୍ତବରେ ବିସ୍ମୟଜନକ ଭାବେ ପ୍ରଶଂସାର୍ହ—"ଯେଉଁ ବିପଦ ଆମର ନଗର ଉପରେ ସେତେବେଳେ ଡ଼ାଙ୍କି ରହିଥିଲା ଏଇ ଆଦେଶନାମା ବଳରେ ତାହା ମେଘ ସଦୃଶ ଭାସିଗଲା !" ଏଇ ପଂକ୍ତିରେ ସ୍ୱୟଂ ମନୋଭାବ ଯେତିକି ଗୁରୁ, ସ୍ୱରର ମିଳନ ମଧ୍ୟ ସେତିକି ନିର୍ଦ୍ଦୋଷ । ଏହା ଦୂତପରି ଗୁରୁ-ଲଘୁ-ଲଘୁ ଲଘୁ କ୍ରମରେ ପ୍ରକାଶିତ । ଏହି ଛନ୍ଦ ସବୁଠାରୁ ଉଦାର ଛନ୍ଦ ଓ ଅଶେଷ ଆଡ଼ମ୍ବରପୂର୍ଣ୍ଣ । ଏଥିପାଇଁ ଆମର ସୁଷ୍ଠୁତମ ଛନ୍ଦ—ବୀର ରସାତ୍ମକ ଛନ୍ଦ—

ଏହାର ପ୍ରଧାନ ଉପାଦାନରେ ନିର୍ମିତ (ଉପରେ କୁହାଯାଇଥିବା ପଂକ୍ତିରେ ଶବ୍ଦାବଳୀ ଶେଷ ପର୍ଯ୍ୟନ୍ତ ଅତ୍ୟନ୍ତ ବିବେଚନା ସହକାରେ ସଂରକ୍ଷିତ) ଯଦି ଆମେ ସେଗୁଡ଼ିକୁ ଯଥା ସ୍ଥାନରୁ ସ୍ଥାନାନ୍ତରିତ କରି ପାଠ କରୁ, ଯଥା,—"ଏଇ ଅଦେଶନୋମା ବଳରେ ତାହା ମେଘ ସଦୃଶ ଭାସିଗଲା, ଯେଉଁ ବିଦେଶ ଆମର ନଗର ଉପରେ ସେତେବେଳେ ତାଙ୍କି ରହିଥିଲା", କେବଳ ସେତିକି ନୁହେଁ, ଯଦି ଆମେ କେବଳ ଗୋଟିଏ ମାତ୍ର ପଦାଂଶ କାଟି ଦେଇ ପାଠ କରୁ ତେବେ ବୁଝି ପାରିବା ସ୍ୱର ସାମଞ୍ଜସ୍ୟ ଓ ଔଦାର୍ଯ୍ୟ ମଧ୍ୟରେ ସଙ୍ଗତି କେତେ ନିବିଡ଼ । ଉପର୍ଯ୍ୟୁକ୍ତ ପଂକ୍ତିରେ ଶବ୍ଦଗୁଡ଼ିକ ଅତି ଦୀର୍ଘ ଲୟରେ ଗତିଶୀଳ, ଯାହାକି ଛନ୍ଦ ଦୃଷ୍ଟିରୁ ଗୁରିଗୋଟି ହ୍ରସ୍ୱ ମାତ୍ରା ସହ ସମାନ; ଏଥିରୁ ଗୋଟିଏ ମାତ୍ରା ଅପସାରଣ କରି ପାଠକଲେ ସଙ୍କେତଣେ ଯୋଗୁ ତତିର ଆଡ଼ମ୍ବର ହଠାତ୍ ଦୁର୍ବଳ ହୋଇପଡ଼େ । ସେହିପରି ବିପରୀତ ଦୃଷ୍ଟିରୁ ଆମେ ଯଦି ଏହାକୁ ବିସ୍ତାରିତ କରୁ ତେବେ ଅର୍ଥରେ କୌଣସି ପରିବର୍ତ୍ତନ ନ ଘଟିଲେ ମଧ୍ୟ ଏହା କାନକୁ ପୂର୍ବଭଳି ପ୍ରଭାବିତ କରେ ନାହିଁ, କାରଣ ମାତ୍ରାଗୁଡ଼ିକୁ ଅଧିକ ବିସ୍ତାରିତ କରିବା ଫଳରେ ପଂକ୍ତିର ଦ୍ରୁତ ଗରିମା ସହସା ନଷ୍ଟ ହେବା ସଙ୍ଗେ ଶିଥିଳ ହୋଇପଡ଼େ ।

# ୪୦

ଶୈଳୀକୁ ଉନ୍ନତ କରିବା ପାଇଁ ଆଉ ଗୋଟିଏ ଅତ୍ୟନ୍ତ ସଫଳ ଉପାୟ ରହିଛି । ଶରୀରର ବିଭିନ୍ନ ଅଙ୍ଗ, ସଂଯୋଗ ସ୍ଥାନରୁ ବିଚ୍ୟୁତ କରିଗଲେ ଯେପରି କୌଣସି ଅନ୍ତର୍ନିହିତ ବୈଶିଷ୍ଟ୍ୟ ରକ୍ଷା କରନ୍ତି ନାହିଁ, କିନ୍ତୁ ସେଗୁଡ଼ିକର ପାରସ୍ପରିକ ସନ୍ନିବେଶ ହେତୁ ସମସ୍ତେ ମିଶି ଏକ ସମଗ୍ର ଓ ପୂର୍ଣ୍ଣାଙ୍ଗ ଜୀବ-ଶରୀର ରଚନା କରନ୍ତି, ସେହିପରି କୌଣସି ମନୋରମ ବର୍ଣ୍ଣନାର ମୌଳିକ ଉପାଦାନ ଗୁଡ଼ିକୁ—ଯଦି ପରସ୍ପର ଠାରୁ ପୃଥକ୍ କରି ରଖାଯାଏ, ତାହାର ଉଚ୍ଚ ଗୁଣ ତା ସହିତ ଛିନ୍ନ ଭିନ୍ନ ହୋଇ ବିଲୀନ ହୋଇଯାଏ; କିନ୍ତୁ ସେ ସମସ୍ତ ଯେତେବେଳେ ଏକ ଆବୟବିକ ସମଗ୍ରତାରେ ମିଳିତ ହୁଅନ୍ତି ଓ ପୁଣି ଐକ୍ୟର

ଶୃଙ୍ଖଳା ଦ୍ୱାରା ସହିତ ରୂପ ଧାରଣ କରନ୍ତି, ସେତେବେଳେ କେବଳ ସ୍ୱକୀୟ ବର୍ତ୍ତୁଳତା ହେତୁ କର୍ଣ-ରସାୟନ ହୋଇ ଉଠନ୍ତି । ବସ୍ତୁତଃ କୁହାଯାଇପାରେ, ବାକ୍ୟାଂଶ ବହୁଳତାର ଅବଦାନରେ ଔଦାତ୍ୟ ଲଭ କରେ । ଆଉ ବିଶେଷତଃ (ଏକଥା ଆମେ ଅନ୍ୟତ୍ର ବିଶେଷରୂପେ ପ୍ରଦର୍ଶନ କରି ସାରିଛନ୍ତି) ବହୁ ଗଦ୍ୟ ଓ ପଦ୍ୟ ଲେଖକ, ଯଦିଓ ସେମାନଙ୍କର ନୈସର୍ଗିକ ଶକ୍ତି ସେତେ ଉନ୍ନତ ନୁହେଁ, ଏପରିକି ସମ୍ଭବତଃ ନିତାନ୍ତ ସୀମିତ ଓ ସେମାନେ ପ୍ରୟୋଗ କରିଥିବା ଶବ୍ଦପୁଞ୍ଜ ଅତି ସାଧାରଣ ଓ ଜନପ୍ରିୟ ତଥା ତହିଁରୁ କୌଣସି ମାର୍ଜିତ ଧାରଣା ଅଭିବ୍ୟଞ୍ଜିତ ହେଉ ନ ଥିଲେହେଁ ସେଗୁଡ଼ିକୁ କେବଳ ଏକ ସଙ୍ଗେ ଗ୍ରନ୍ଥନ କରିବା ଦ୍ୱାରା ସେମାନେ ଗୌରବ ଓ ବିଶିଷ୍ଟତା ଲାଭ କରିପାରିଛନ୍ତି । ଏ କଥାର ଦୃଷ୍ଟାନ୍ତ ଅନ୍ୟ ବହୁ ବ୍ୟକ୍ତିଙ୍କ ମଧ୍ୟରେ ଫିଲିସ୍ଟସ୍‌ଙ୍କ ରଚନାରେ, ଅରିଷ୍ଟୋଫେନେସ୍‌ଙ୍କ କେତେକ ରଚନାରେ ଓ ଇଉରିପେଡେସ୍‌ଙ୍କ ସମସ୍ତ ରଚନାରେ ପରିଲକ୍ଷିତ ହୁଏ । ଏହାର ଦୃଷ୍ଟାନ୍ତ ସ୍ୱରୂପ ଯେତେବେଳେ ହେରକ୍ଲିସ୍ ତାହାର ସନ୍ତାନ ସନ୍ତତିଙ୍କୁ ହତ୍ୟା କରି ସାରି କହିଛି

ଭରି ସାରିଛି ମୋ ଜୀବନ ଦୁଃଖରେ,
ନାହିଁ ତହିଁ ଅବକାଶ ଅଧିକ ଦୁଃଖର—

ଏଇ ଶବ୍ଦ ଗୁଡ଼ିକ ଅତି ସାଧାରଣ ; ମାତ୍ର ପଦ-ରଚନାର ଅସାଧାରଣତା ହେତୁ ଏହା ଉଦାତ୍ତ ହୋଇ ଉଠିଛି । ଯଦି ଏହି ବାକ୍ୟର ରଚନା ଭିନ୍ନ ରୀତିରେ କରାଯାଏ ତେବେ ଦେଖାଯିବ ଇଉରିପେଡେସ୍‌ଙ୍କ କାବ୍ୟଗୁଣ ତାଙ୍କର ଭାବନା ଉପରେ ଯେତେ ପ୍ରତିଷ୍ଠିତ ନୁହେଁ, ତା'ଠାରୁ ତାଙ୍କର ରଚନା-ବିନ୍ୟାସ ଶକ୍ତି ଉପରେ ଅଧିକ ପ୍ରତିଷ୍ଠିତ । ବୃଷ ଦ୍ୱାରା ଟଣା ହୋଇ ଯାଉଥିବା ଡିର୍ସର ବର୍ଣନା ସ୍ଥଳ ସହିତ ତୁଳନା କର—

ଯାହା କିଛି ତା'ର ସମ୍ମୁଖରେ ପଡ଼ୁଥିଲା, ଶିକାର ରୂପରେ, ବଳେ ଧରି, ସଂଜୋରେ ଆକର୍ଷି ପ୍ରସ୍ତର, ରମଣୀ, ଓକ୍ ବୃକ୍ଷ, କେବେ ଏଠି, କେବେ ସେଠି, ପକାଉଣ ଥିଲା ।

ଏଇ ବ୍ୟାପାର ସ୍ୱତଃ ମହାନ୍, ହେଲେ ଘଟଣାକୁ ତ୍ୱରାନ୍ୱିତ ନ କରିବା ପାଇଁ ଛନ୍ଦ-ବିନ୍ୟାସ ଏପରି କରି ଯାଇଛନ୍ତି ଯେ, ଛନ୍ଦ ଏଠାରେ ଚଢ଼ ଗଡ଼, ଧାବମାନ ଗତିରେ ପ୍ରଯୁକ୍ତ ନୁହେଁ କାରଣ ଏଠାରେ ପ୍ରତ୍ୟେକ ଛନ୍ଦ ଉପରେ ଗୁରୁତ୍ୱ ପ୍ରଦାନ କରିଯାଇଛନ୍ତି ଓ କ୍ରମେ ଦ୍ୱାରା ସ୍ଫୂର୍ତ୍ତି ଲାଭ କରି ବିଲମ୍ବିତ ଭାବରେ ଏକ ଦୃଢ଼ ଅଧ୍ୟାତ୍ମିକ ଔଦାର୍ଯ୍ୟ ଶିଖର ଉଦ୍ଦେଶ୍ୟରେ ଅଗ୍ରସର ହୋଇଛନ୍ତି ।

## ୪୧

କୌଣସି ଶୈଳୀର ମର୍ଯ୍ୟାଦା ନଷ୍ଟ କରିବାରେ ଭାଷାର ବୀର୍ଯ୍ୟ ଓ ଅସ୍ତବ୍ୟସ୍ତ ପ୍ରବାହ ଠାରୁ ବଳି କ୍ଷତିକାରକ ବସ୍ତୁ ଅନ୍ୟ କିଛି ନାହିଁ । ଏହା ଲଘୁ-ଲଘୁ ଓ ଗୁରୁ-ଲଘୁ କ୍ରମରେ ଦ୍ୱିମାତ୍ରିକ ପଦ ଓ ଗୁରୁ-ଲଘୁ କ୍ରମରେ ଚତୁର୍ମାତ୍ରିକ ପଦମାନଙ୍କରେ ସୃଷ୍ଟି ହୁଏ ଓ ଏଥିରେ ଭାଷା ନୃତ୍ୟ କଲା ଭଳି ପ୍ରତୀତ ହୁଏ । ଛନ୍ଦର ଏପରି ଅବ୍ୟବହାର ଦ୍ୱାରା ରଚନାରେ କୃତ୍ରିମତା ଓ ଭଙ୍ଗୀ ଛଳନା ପ୍ରତି ଅତିରିକ୍ତ ଆଗ୍ରହ ପ୍ରଦର୍ଶନ କରିଯାଇଥାଏ । ସ୍ୱରରେ ବୈଚିତ୍ର୍ୟହୀନ ଏକରସତା ଯୋଗୁ ଏହା ଅଳ୍ପମାତ୍ରାରେ କ୍ଳାନ୍ତିକର ହୋଇ-ଉଠେ । ମାତ୍ର ଏହାର ସବୁଠାରୁ କୁପ୍ରଭାବ ହେଲା, କୌଣସି ଗାଥା ଶ୍ରବଣ କରୁଥିବା ଶ୍ରୋତା ଯେପରି ତାହାର ବିଷୟବସ୍ତୁ ପ୍ରତି ଧ୍ୟାନ ନଦେଇ କେବଳ ଲୟ ଛଡ଼ା ଅନ୍ୟ କିଛି ଚିନ୍ତା କରେ ନାହିଁ, ସେହିପରି ଅତ୍ୟଧିକ ଲୟପୂର୍ଣ୍ଣ ରଚନା ଶବ୍ଦାବଳୀର ଅର୍ଥ ଦ୍ୱାରା ଶ୍ରୋତା ଉପରେ ପ୍ରଭାବ ପକାଏ ନାହିଁ, ବରଂ ସ୍ୱରର ଆରୋହ ଅବରୋହ ଦ୍ୱାରା ପ୍ରଭାବ ପକାଇଥାଏ । ଫଳରେ ଶ୍ରୋତା ବେଳେ ବେଳେ କେଉଁଠାରେ ପଂକ୍ତିର ଅନ୍ତ ଘଟିବ ଜାଣି ବକ୍ତା ସହିତ ତାଳ ରକ୍ଷା କରେ ଓ ନର୍ତ୍ତକ ଭଳି ଆରମ୍ଭରୁ ପଦ-ବିକ୍ଷେପ କରି ଲାଗେ । କୌଣସି ବାକ୍ୟକୁ କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ଛନ୍ଦରେ ବିଭକ୍ତ କରି ଓ ଘନିଷ୍ଠ ଭାବେ ଯୋଡ଼ିବା ଦ୍ୱାରା ତଥା କର୍କଶ ଓ ବିଷମ ଭାବେ ସଂଯୋଜନ

ନରି ଖୋପ ଭିତରେ କାଷ୍ଠ ଖଣ୍ଡ ପୂରେଇବା ଭଳି ଏହା ସେହିପରି ଉଦାତ୍ତ ଶୈଳୀର ମର୍ଯ୍ୟାଦା କ୍ଷୁର୍ଣ୍ଣ କରେ ।

## ୪୨

ଅତି ମଧ୍ୟ ଉକ୍ତି ସଙ୍କୋଚ ଦ୍ୱାରା ଔଦାତ୍ତ୍ୟ ହ୍ରାସ ପାଏ । ଅତି-ସଂକ୍ଷେପଣ ଗରିମା ପରିବର୍ତ୍ତେ ବୈକଲ୍ୟ ଆନୟନ କରିବା ସୁନିଶ୍ଚିତ ହୋଇଉଠେ । ମୁଁ ଏଠାରେ ନ୍ୟାୟସଙ୍ଗତ ସମାସଶୈଳୀ ବିଷୟରେ କହୁନାହିଁ, ମୁଁ ସେହି ଉକ୍ତି ବିଷୟରେ କହୁଛି ଯାହା ଖର୍ବୀକୃତ ଓ କ୍ଷୁଦ୍ର କ୍ଷୁଦ୍ର ଭାଗରେ ଖଣ୍ଡିତ ହୋଇଥାଏ । କାରଣ ଛନ୍ଦ-ସ୍ୱଳ୍ପତା ଅର୍ଥକୁ ସଙ୍କୁଚିତ କରିଦିଏ ; ମାତ୍ର ସମାସ-ଗୁଣ ପ୍ରତ୍ୟକ୍ଷ ଭାବେ ଲକ୍ଷ୍ୟ ହାସଲ କରେ । ଅନ୍ୟ ପକ୍ଷରେ, ଆମେ ଜାଣୁ ଯେ, ଅତି-ବିସ୍ତାରଣା ଶୈଳୀକୁ ପ୍ରାଣହୀନ କରିଦିଏ—ଅନୁଚିତ ଦୀର୍ଘତା ପ୍ରତି ଲକ୍ଷ୍ୟ ରଖି ଏ କଥା କୁହାଯାଉଛି ।

## ୪୩

ଅଭିବ୍ୟକ୍ତିର କ୍ଷୁଦ୍ରତା ଦ୍ୱାରା ମଧ୍ୟ ଔଦାତ୍ତ୍ୟ ହାନିର ଆଶଙ୍କା ରହିଥାଏ । ଉଦାହରଣ ସ୍ୱରୂପ, ହେରୋଡୋଟସ୍ ଝଡ଼ର ଅଦ୍ଭୁତ ଓ ପ୍ରଭାବଶାଳୀ ବର୍ଣ୍ଣନ କରିଛନ୍ତି; ମାତ୍ର ସେହି ବର୍ଣ୍ଣନାରେ ଏପରି କେତେକ ଶବ୍ଦର ପ୍ରୟୋଗ କରିଯାଇଛନ୍ତି ଯାହା ବିଷୟ ଗୌରବର ଅନୁକୂଳ ନୁହେଁ । ଉଦାହରଣ ସ୍ୱରୂପ, ଗୋଟିଏ ପଦ ଅଛି, "ସମୁଦ୍ର ଯେବେ ଦୋହଲିଲା" । ଏଠାରେ "ଦୋହଲିଲା" ଶବ୍ଦ ଔଦାତ୍ତ୍ୟର ଘୋର ବାଧକ ହୋଇଛି, କାରଣ ଏହାର ଧ୍ୱନି ଅସୁନ୍ଦର । ସେହିପରି ସେ ଯେତେବେଳେ କହିଛନ୍ତି, "ପବନ ଥକି ଗଲା" ଓ "ଯେଉଁମାନେ ଧ୍ୱଂସପ୍ରାପ୍ତ ଜାହାଜକୁ ଜାବୁଡ଼ି ଧରି ରହିଥିଲେ ସେମାନଙ୍କର ଅପ୍ରିୟ ଅନ୍ତ ହେଲା ।" ଏଠାରେ "ଥକି ଗଲା" ପଦ ନିକୃଷ୍ଟ ଓ

ଗ୍ରାମ୍ୟ ; ସେହିପରି "ଅପ୍ରିୟ" ଶବ୍ଦ ଏପରି ବିରଳ ଯେକି ନିମନ୍ତେ ସମ୍ପୂର୍ଣ୍ଣ ଅନୁପଯୁକ୍ତ ।

ସେହିପରି ଥର୍ଟେଣ୍ଟେସ୍ ମିଶର ବିରୁଦ୍ଧରେ ପାରସ୍ୟ ସମ୍ରାଟଙ୍କ ଆକ୍ରମଣରେ ଅଦ୍ଭୁତ ବର୍ଣ୍ଣନା କରି ସାରି ଶେଷରେ ସମସ୍ତ ପ୍ରଭାବକୁ କେତୋଟି ନଗଣ୍ୟ ଶବ୍ଦ ପ୍ରୟୋଗ ଦ୍ୱାରା ନଷ୍ଟ କରି ଦେଇଛନ୍ତି । ସେ ଲେଖିଛନ୍ତି "ଏସିଆଖଣ୍ଡର କେଉଁ ନଗର ଓ କେଉଁ ଜାତି ଏହି ମହାନ୍ ନରପତିଙ୍କ ନିକଟକୁ ନିଜର ଦୂତ ପ୍ରେରଣ କରି ନଥିଲେ ! ପୃଥିବୀର କେଉଁ ସୁନ୍ଦର ଓ କେଉଁ ଅମୂଲ୍ୟ ଦ୍ରବ୍ୟ ଓ କଳା ସୃଷ୍ଟି ଉପହାର ସ୍ୱରୂପ ତାଙ୍କ ନିକଟକୁ ଆଣିତ ହୋଇ ନଥିଲା ? କେତେ ଦୁର୍ମୂଲ୍ୟ ଝାଲରଯୁକ୍ତ ପରଦା ଓ ବିଚିତ୍ରିତ ପୋଷାକ—କେତେକ ଲୋହିତବର୍ଣ୍ଣ କେତେକ ସୂଚୀକର୍ମଯୁକ୍ତ, କେତେକ ଶୁଭ୍ର ; ସକଳ ଆବଶ୍ୟକ ଉପକରଣରେ ସଜ୍ଜିତ ସ୍ୱର୍ଣ୍ଣରେ ଅଗଣିତ ତମ୍ବୁ, ତାର ଭିତର ପରଦା ଓ ଅତ୍ୟନ୍ତ ମୂଲ୍ୟବାନ୍ ଶଯ୍ୟାଧାରର କଳ୍ପନା କର । ସୁବର୍ଣ୍ଣ ଓ ରୌପ୍ୟ-ନିର୍ମିତ ମୂଲ୍ୟବାନ୍ ଡେକାଡ, ପାନ ପାତ୍ର ଓ ବୃହତ୍ ପାନୀୟ କୁଣ୍ଡ—ଯେଉଁ ଗୁଡ଼ିକରୁ ଅଧିକାଂଶ ବହୁମୂଲ୍ୟ ରତ୍ନଜଡ଼ିତ ହୋଇଥିବା ଦେଖାଯାଇ ପାରେ ତଥା ଅନ୍ୟଗୁଡ଼ିକ ଖୁବ୍ ଶ୍ରମସହକାରେ, ବହୁ ଧନବ୍ୟୟ ପୂର୍ବକ ଖୋଦନ କରାଯାଇଥିଲା । ଏତଦ୍‌ବ୍ୟତୀତ ଗ୍ରୀସୀୟ ଓ ବିଦେଶୀୟ ଜାତିମାନଙ୍କର ଅଗଣିତ ଅସ୍ତ୍ର-ଶସ୍ତ୍ର, ଅସଂଖ୍ୟ ଭାରବାହୀ ଓ ବଧ ନିମନ୍ତେ ହୃଷ୍ଟପୁଷ୍ଟ ପଶୁ, ପ୍ରଚୁର ପରିମାଣରେ ମସଲା, ଝୁଡ଼ି ଓ ଥଳୀ ମାନଙ୍କରେ ଭରା ଲେଖା-କାଗଜ, ତଥା ସମାନ ପରିମାଣ ବିଶିଷ୍ଟ ଅନ୍ୟବିଧ ଆବଶ୍ୟକ ଦ୍ରବ୍ୟ, ନାନା ଜାତି ପଶୁମାନଙ୍କର ବିପୁଳ ପରିମାଣରେ ଲବଣାକ୍ତ ମାଂସ ଇତ୍ୟାଦି-ଇତ୍ୟାଦି ପଦାର୍ଥମାନଙ୍କର ଏପରି ସମାବେଶ କରାଯାଇଥିଲା ଯେ ଦୂରରୁ ଲୋକେ ତାହାକୁ କୁଦ ଓ ପାହାଡ଼ ବୋଲି ମନେ କରୁଥିଲେ ।" ଏଥିରୁ ଜଣାଯାଏ, ଲେଖକ ତାଙ୍କର ବିଷୟବସ୍ତୁର ଉଦାତ୍ତ ସ୍ତର ଠାରୁ ନିମ୍ନ ସ୍ତରକୁ ଖସି ଆସିଛନ୍ତି ଯେତେବେଳେ କି ଏହାର ବିପରୀତରେ ତାଙ୍କର ଉଚ୍ଚତର ସ୍ତର ପ୍ରତି ଅଗ୍ରସର

ହେବା ଉଚିତ ଥିଲା । ଆଡ୍ସର ଅସୁନ୍ଦର କଥା ହେଲା, ସେହି ମହାନ୍ ଓ କର୍ମ-ମୁଖର ଦୃଶ୍ୟ ମଧ୍ୟରେ ସାମଗ୍ରୀ-ସକଳର ଅପୂର୍ବ ବର୍ଣ୍ଣନ ସହିତ ସେ ଥଳୀ, ଝୁଙ୍ଗ୍ ଓ ମସଲିନ୍‌ମାନଙ୍କର ଉଲ୍ଲେଖ କରିଛନ୍ତି ଯାହାଦ୍ୱାରା ଯେ କେହି ମନେ କରିବେ ସେ ଏକ ରନ୍ଧନଶାଳାର ଦୃଶ୍ୟ ବର୍ଣ୍ଣନା କରୁଛନ୍ତି । ମନେକର, ଏବଂବିଧ ବିଭବମୟ ପରିବେଶ ମଧ୍ୟରେ—ସୁବର୍ଣ୍ଣର ପାତ୍ର, ରତ୍ନଖଚିତ କୁଣ୍ଡ, ରୌପ୍ୟ ଥାଳୀ ଓ ସୁବର୍ଣ୍ଣର ତମ୍ବୁ ମଧ୍ୟରେ, ଯଦି କୌଣସି ବ୍ୟକ୍ତି କଦାକାର ଝୁଡ଼ି ଓ ଥଳୀ ନେଇ ଥୋଇଦିଏ ତେବେ ସେ ଦୃଶ୍ୟ ଆମ ଆଖିକୁ କେତେ ଅସଙ୍ଗତ ବୋଧ ନ ହେବ ! ସେହିପରି, ପ୍ରସଙ୍ଗ-ବିରୁଦ୍ଧ ଶବ୍ଦାବଳୀ ବୈକଲ୍ୟ ସୃଷ୍ଟି କରେ ଓ ଭାଷାରେ କଳଙ୍କ ସଦୃଶ ପ୍ରତୀତ ହୁଏ । ସେ ଦେଇଥିବା ବର୍ଣ୍ଣନା ଅନୁସାରେ, ସେଇ ସ୍ତୂପୀକୃତ ପଦାର୍ଥମାନ ପାହାଡ଼ ଭଳି ଦେଖା ଯାଉଥିଲା, ସେହିପରି ସେ ଏ ସମସ୍ତ ବସ୍ତୁର ପୁଙ୍ଖାନୁପୁଙ୍ଖ ଦୃଶ୍ୟକୁ ଗୋଟିଏ ଦୁଇଟି ପଂକ୍ତିରେ ବର୍ଣ୍ଣନା କରିପାରିଥାନ୍ତେ । ସେହିପରି ଆଉସବୁ ଆୟୋଜନ ବିଷୟରେ ମଧ୍ୟ କହି ପାରିଥାନ୍ତେ "ଭୋଜନ-ବିଳାସ ଓ ଉପଭୋଗ ନିମନ୍ତେ ଯାହା କିଛି ପ୍ରୟୋଜନ ସେ ସମସ୍ତ ବସ୍ତୁ ଅଗଣିତ ପଶୁ, ଓଟ ଓ ଗାଡ଼ି-ମାନଙ୍କରେ ଲଦି ଅଣା ଯାଇଥିଲା" କିମ୍ବା ଉଲ୍ଲେଖ କରି ପାରିଥାନ୍ତେ "ସମସ୍ତ ପ୍ରକାର ଉତ୍କୃଷ୍ଟ ମୁଖରୋଚକ ଖାଦ୍ୟ ତଥା ଭୋଜନବିଳାସୀର ସ୍ୱାଦ ନିମନ୍ତେ ପ୍ରତ୍ୟେକ ପ୍ରକାର ଦ୍ରବ୍ୟର ଓ ଅନ୍ନର ସମାବେଶ ଘଟିଥିଲା", ଅଥବା ସେ ଯଦି ଏଇ ବସ୍ତୁ ସମୂହର ଅତି ସ୍ପଷ୍ଟ ବର୍ଣ୍ଣନା ଦେବାକୁ ଚାହୁଁଥିଲେ ତେବେ ସେ କହି ପାରିଥାନ୍ତେ, "ରନ୍ଧନ ବା ଉଚ୍ଚ ଦରର ଭୋଜି ନିମନ୍ତେ ଆବଶ୍ୟକ ସକଳ ରୁଚିକର ପଦାର୍ଥ ଯୋଗାଇ ଦିଆ ଯାଇଥିଲା ।" କୌଣସି ପ୍ରବଳ କାରଣ ବଶତଃ ଅନିବାର୍ଯ୍ୟ ହୋଇ ନ ଉଠିଲେ ଆମେ ଉଦାତ୍ତ ପ୍ରସଙ୍ଗରେ ହୀନ ଓ ଘୃଣ୍ୟ ଭାଷା ପ୍ରୟୋଗ କରିବାକୁ ଉଦ୍ୟମ କରିବା ସର୍ବଥା ନିନ୍ଦନୀୟ । ଔଚିତ୍ୟାନୁମୋଦିତ ରୀତିରେ ରଚନା କରିବାକୁ ହେଲେ ଆମର ଅଭିବ୍ୟକ୍ତି ବିଷୟାନୁସାରୀ ହେବା ଉଚିତ । ମନୁଷ୍ୟର ଶିଳ୍ପୀ-ସ୍ୱଭାବରୁ ଆମର ଶିକ୍ଷା କରିବା ଉଚିତ—ମନୁଷ୍ୟ ଶରୀର ଗଠନର ପରିକଳ୍ପନା କାଳରେ ପ୍ରକୃତି

ନିକୃଷ୍ଟ ଅଙ୍ଗଗୁଡ଼ିକୁ ବା ମଳ-ପରିଷ୍କରଣ ଅନ୍ଦର ନାଳୀଗୁଡ଼ିକୁ ସମ୍ମୁଖ ଭାଗରେ ନରଖି ଯେତେଦୂର ସମ୍ଭବ ସେଗୁଡ଼ିକୁ ପ୍ରଚ୍ଛନ୍ନ ରଖିବାକୁ ଚେଷ୍ଟା କରିଛନ୍ତି— ଜେନୋଫୋନଙ୍କ ଭାଷାରେ କହିଲେ, "ପ୍ରକୃତି ସେଇ ନାଳୀଗୁଡ଼ିକୁ ଯେତେଦୂର ସମ୍ଭବ ସୁଦୂର ପୃଷ୍ଠଭୂମିରେ ରଖିଛି" ଓ ତା ଫଳରେ ସମଗ୍ର ଜୀବଶରୀରର ସୌନ୍ଦର୍ଯ୍ୟ ଯେପରି ନଷ୍ଟ ନ ହୁଏ ତାହାର ଉପାୟ କରିଛି ।

ଯାହାହେଉ, ଉଦାତ୍ତ ଶୈଳୀର ମହତ୍ତ୍ୱ ହାନିକର ପ୍ରତ୍ୟେକ ବିଷୟର ନିର୍ଦ୍ଦେଶ ଓ ଗଣନା କରିବା ଆମର ଉଦ୍ଦେଶ୍ୟ ନୁହେଁ । ଆମେ ଏଠାରେ ଶୈଳୀକୁ ଭବ୍ୟ ଓ ଉଦାତ୍ତ ରୂପ ପ୍ରଦାନ କରିବା ବିଷୟରେ ନାନାବିଧ ଗୁଣର ଉଲ୍ଲେଖ କରିସାରିଛନ୍ତି । ଫଳରେ ଏକଥା ଏଠାରେ ସ୍ପଷ୍ଟ ଯେ, ଏ ସବୁର ବିପରୀତ ଗୁଣାବଳୀ ସାଧାରଣତଃ ଏହାକୁ ନିକୃଷ୍ଟ ଓ ବିକୃତ କରିବ ।



ପ୍ରିୟ ଟେରେନ୍ସିଅନୁସ୍, ତୁମର ଜିଜ୍ଞାସୁ ମନକୁ ଚରିତାର୍ଥ କରିବା ପାଇଁ ମୁଁ କେତୋଟି ମନ୍ତବ୍ୟ ଯୋଗ କରିବାକୁ କୁଣ୍ଠିତ ହେବ ନାହିଁ ଯେ, ତଥାପି ଏ ବିଷୟରେ ଆଉ ଗୋଟିଏ ମାତ୍ର ପ୍ରଶ୍ନର ସ୍ପଷ୍ଟୀକରଣ ବାକି ଅଛି, ତାହା ହେଲା, ଅତି ନିକଟରେ କେହି ଜଣେ ଦାର୍ଶନିକ ମୋତେ ପଚାରିଥିଲେ । ସେ କହିଥିଲେ "ମୁଁ କହିବି, ଅନ୍ୟମାନେ ମଧ୍ୟ କହି ପାରନ୍ତି, ସାଧାରଣତଃ ମୋ ପକ୍ଷରେ ଏହା ଏକ ଆଶ୍ଚର୍ଯ୍ୟ ବ୍ୟାପାର ଯେ ବର୍ତ୍ତମାନ ଯୁଗରେ ଏପରି ବ୍ୟକ୍ତି ଅଛନ୍ତି ଯେଉଁମାନେ କି ଅନ୍ୟକୁ ପ୍ରଭାବିତ କରିବା କଳାରେ ଅତି ଦକ୍ଷ ; ଅତି ବିଚକ୍ଷଣ, ନିରଳସ ଓ ଭାଷାର ସମୃଦ୍ଧି ଉପରେ ସେମାନଙ୍କର ବିଶେଷ ଅଧିକାର ରହିଛି, ତଥାପି ସେହିପରି ଦୁର୍ଲଭ କେତେ ଜଣଙ୍କୁ ଛାଡ଼ି ଦେଲେ ଉଦାତ୍ତ ଓ ଅଲୌକିକ ପ୍ରତିଭାସମ୍ପନ୍ନ ବ୍ୟକ୍ତି ଆଉ ଜନ୍ମଲାଭ କରୁ ନାହାନ୍ତି । ଆଜି ସମଗ୍ର ପୃଥିବୀରେ ଉଦାତ୍ତ ବାଣୀର ଘୋର ଅଭାବ ସମସ୍ତେ

ଅନୁଭବ କରୁଛନ୍ତି ।’ ସେ ପୁଣି ପଚାରିଥିଲେ, “ଆମେ କ’ଣ ସେହି ବହୁବାର କଥିତ ଦୃଢ଼ ଘୋଷଣାକୁ ସ୍ୱୀକାର କରିନେବା ଯେ ଗଣତନ୍ତ୍ର-ବ୍ୟବସ୍ଥାହିଁ ପୃଥିବୀର ଦଣ୍ଡାବର୍ଣ୍ଣ ଧାରୀ ଓ ଉଚ୍ଚକୋଟିର ସାହିତ୍ୟିକ କ୍ଷମତା କେବଳ ତାହାର ଯୌବନରେ ଅଭିବୃଦ୍ଧି ଲାଭ କରେ ଓ ତାହାର ଅବନତିରେ ବିଲୟ ଭଜିଥାଏ ? କାରଣ, କଥିତ ଅଛି, ସ୍ୱାଧୀନତା ମଧ୍ୟରେ ରହିଛି ଉଚ୍ଚ ମନୀଷା ସମ୍ପନ୍ନ ବ୍ୟକ୍ତିମାନଙ୍କ ଅଭିଳାଷକୁ ପରିପୁଷ୍ଟ ଓ ଆଶାକୁ ପ୍ରେରଣା ଦାନ କରିବାର ସକଳ କ୍ଷମତା । ସ୍ୱାଧୀନତା ଥିଲେ ଉଚ୍ଚତମ ପଦବୀ ଲାଭ ନିମନ୍ତେ ପାରସ୍ପରିକ ପ୍ରତିଯୋଗିତା ଓ ଉଚ୍ଚାଭିଳାଷର ସ୍ପର୍ଦ୍ଧା ସତତ ଜୀବନ୍ତ ରହେ । ଏତଦବ୍ୟତୀତ, ପ୍ରତ୍ୟେକ ସ୍ୱାଧୀନ ରାଷ୍ଟ୍ରରେ ଯେଉଁ ପୁରସ୍କାରମାନ ପ୍ରଦତ୍ତ ହୁଏ ତାହା ରାଷ୍ଟ୍ରର ପ୍ରମୁଖ ବକ୍ତାମାନଙ୍କର ମାନସିକ ଶକ୍ତିକୁ ନିରନ୍ତର ଅଭ୍ୟାସ ଦ୍ୱାରା ପ୍ରଖରତର କରି ତୋଳେ, ସତେ ଯେପରି ଘର୍ଷଣ ଦ୍ୱାରା ସେମାନେ ଜ୍ୱଳି ଉଠନ୍ତି ଓ ସ୍ୱାଧୀନତାର ପରିମଣ୍ଡଳ ମଧ୍ୟରେ ସ୍ୱଭାବତଃ ଉଜ୍ଜ୍ୱଳ ଆଲୋକ ବିତରଣ କରି ଲଗନ୍ତି । ସେ ପୁଣି କହିଥିଲେ, “ଆଜି ଯାହା ଜଣା ପଡୁଛି, ଆମେ ଅନୁରୂପ ପେସୁଣ ଦାସବୃତ୍ତି ଶିକ୍ଷା ଲାଭ କରିବାର ବାଲ୍ୟାବସ୍ଥାରେ ହିଁ ରହିଛୁ ଓ ତାହାରି ରୀତି ଓ ଆଚାର-ବ୍ୟବହାରରେ ପୁରମାତ୍ରାରେ ଲାଳିତ ପାଳିତ ହେଉଛୁଁ । ଆଜି ଆମର ଶରୀରଶକ୍ତି ନିତାନ୍ତ ସୁକୁମାର ଓ ଆମେ ବକ୍ତୃତ୍ୱ କଳାର ସେହି ସୁନ୍ଦର ଓ ଉର୍ବର ଉତ୍ସର (ସ୍ୱାଧୀନତା ଏଠାରେ ମୋର ଅଭିପ୍ରାୟ) ଆସ୍ୱାଦନ କରି ନାହାନ୍ତି । ଫଳତଃ ନିପୁଣ ବକ୍ତୃତାର ବ୍ୟତୀତ ଆମର ଅନ୍ୟ କୌଣସି ପ୍ରକାର ବିକାଶ ସମ୍ଭବ ହେଉନାହିଁ ।” ଯଦିଓ ଦାସତ୍ୱ-ସମ୍ବନ୍ଧୀୟ ଅବସ୍ଥା ସହିତ ଅନ୍ୟ ସକଳ ଗୁଣ ବିଦ୍ୟମାନ ରହେ, କେବଳ ଏହି କାରଣ ଯୋଗୁଁ କୌଣସି ଦାସ କେବେ ବକ୍ତା ହୋଇ ପାରି ନାହିଁ । କାରଣ ଦାସଠାରେ ଏକ ମୂକ ଆତ୍ମା ପ୍ରକଟ ହୋଇପଡ଼େ, ତାହାର ଆତ୍ମା ଶୃଙ୍ଖଳବଦ୍ଧ ; ପ୍ରହାର ଅଭ୍ୟସ୍ତ ବ୍ୟକ୍ତି ସଦୃଶ ସେ ସର୍ବଦା ପ୍ରହାର ପ୍ରତୀକ୍ଷାରେ ରହେ । ହୋମର କହିଛନ୍ତି

ଦାସତ୍ୱର ଏକ ଦିନ
ହେଇଯାଏ ଆମର ଅର୍ଦ୍ଧେକ ପୌରୁଷ ।

ସେ ପୁଣି କହିଥିଲେ, "ଯେଉଁ ପିଂଜରାରେ ଖବକାୟ ମଣିଷକୁ—ଯାହାକୁ ସାଧାରଣତଃ 'ବାମନ' କୁହାଯାଏ (ମୁଁ ଯାହା ଶୁଣିଛି, ତାହା ଯଦି ବିଶ୍ୱାସଯୋଗ୍ୟ ହୋଇଥାଏ) ପାଳନ ପୋଷଣ କରାଯାଏ, ତାହା କେବଳ ଆବଦ୍ଧ ପ୍ରାଣୀର ବିକାଶରେ ବାଧା ଦିଏ ନାହିଁ, ତାହାର ଶରୀରର ପ୍ରତ୍ୟେକ ଅଂଶକୁ ଚାପ ପ୍ରୟୋଗ ଦ୍ୱାରା ତାହାକୁ ସମ୍ପୂର୍ଣ୍ଣ କୃଶ କରିଦିଏ । ସେଥିପାଇଁ ଯେତେ ନିରପେକ୍ଷ ହେଲେ ମଧ୍ୟ ସବୁ ପ୍ରକାର ସ୍ୱୈରତନ୍ତ୍ରକୁ ଆତ୍ମାର ପିଂଜରା ଓ ସାଧାରଣ କାରାଗୃହ ରୂପେ ନିର୍ଦ୍ଦେଶ କରାଯାଇପାରେ ।"

ମୁଁ ତାଙ୍କୁ ଏହିପରି ଉତ୍ତର ଦେଇଥିଲି, "ପ୍ରିୟ ବନ୍ଧୁ, ଆମେ ଯେଉଁ ଯୁଗରେ ବାସ କରୁଛନ୍ତି ତାହାର ଦୋଷ ପ୍ରଦର୍ଶନ କରିବା ଅତି ସହଜ ଓ ମାନବ—ସ୍ୱଭାବର ବୈଶିଷ୍ଟ୍ୟ । କିନ୍ତୁ ଏବେ ବିଚାର କରି ଦେଖନ୍ତୁ ତ ସଂସାରରେ ଶାନ୍ତି ନୁହେଁ, ବରଂ ଆମର ସେହି ଅନନ୍ତ ଅନ୍ତଃ-ସଂଘର୍ଷହିଁ ପ୍ରତିଭାକୁ କ୍ଷୟ କରି ଲାଗିଛି—ଯାହା ଆମର କାମନାସମୂହକୁ ବ୍ୟାପୃତ କରି ରଖିଛି । ଏହାଠାରୁ ଆହୁରି ମାରାତ୍ମକ ହେଲେ ଆମର ସେହି ମନ୍ଦ ଆବେଗାବଳୀ, ଯେଉଁଗୁଡ଼ିକ ଆଜି ଆମକୁ ଅଧିକାର କରି ଆମ ଜୀବନକୁ ନାରଖାର ଓ ଲୁଣ୍ଠନ କରି ଲାଗିଛନ୍ତି । ଧନ ଲାଳସା ଓ ସୁଖଭୋଗ ଲାଳସା (ଯେଉଁ ରୋଗରେ ଆମେ ସଭିଏଁ ପୀଡ଼ିତ) ଆମକୁ ଦାସ କରି ଦେଇଛନ୍ତି ; ଏହା ମଧ୍ୟ କୁହାଯାଇପାରେ ଯେ, ଏମାନେ ଆମ ଜୀବନଯାତ୍ରାକୁ ସମ୍ପୂର୍ଣ୍ଣ ଧ୍ୱସ୍ତ ବିଧ୍ୱସ୍ତ କରି ଦେଇଛନ୍ତି । ଧନ ପ୍ରେମ ଓ ସୁଖଭୋଗ ଲାଳସା ଏପରି ଏକ ମାନସିକ ରୋଗ ଯାହା ମନୁଷ୍ୟକୁ ହୀନ ଓ ନିକୃଷ୍ଟ କରିଦିଏ । ଏ କଥା ବିଚାର କଲାବେଳେ ମୁଁ ଚିନ୍ତା ଖୋଜି ପାଉନାହିଁ ଯେ ଯଦି ଆମେ ବିପୁଳ ବିଭବକୁ ଏତେ ଅଧିକ ସମ୍ମାନ ଦେଉଁ ବା ଅଧିକ ସ୍ପଷ୍ଟ କରି କହିଲେ, ଆମେ ଯଦି ତାହାକୁ ଦେବତା ଭଳି ଜ୍ଞାନ କରୁ, ତେବେ ଏହା କିପରି ସମ୍ଭବ ହେବ ଯେ ଧନ ସହିତ ବୃଦ୍ଧି ଲାଭ କରୁଥିବା ମନ୍ଦଗୁଣଗୁଡ଼ିକୁ ପ୍ରବେଶ କରାଇ ନଦେବା ପାଇଁ ଆମ ଆତ୍ମାର ଦ୍ୱାର ରୁଦ୍ଧ ରଖି ପାରିବା । କାରଣ ଅମାପ ଓ ଅବଲ୍‌ଗିତ ଧନ-ସମ୍ପତ୍ତି ଅମିତାଚାରର ପିଛା ଧରି ତା ସହିତ ପାଦ ମିଳାଇ ଚାଲେ ଓ ଧନସମ୍ପତ୍ତି

ଯେଉଁ ମୁହୂର୍ତ୍ତରେ ନଗର ଓ ଗୃହ ମାନଙ୍କର ଦ୍ୱାର ଖୋଲିବାକୁ ଲଗେ ସେହି ମୁହୂର୍ତ୍ତରେ ଅମିତ୍ରାଗୃର ତା ସହିତ ପ୍ରବେଶ କରେ ଓ ସେଇଠାରେ ତାର ଘର କରିବା ଆରମ୍ଭ କରିଦିଏ । କିଛି କାଳ ଅନ୍ତେ ଏ ଦୁହିଁଙ୍କ ଯୋଡ଼ ମନୁଷ୍ୟ ଜୀବନର ଗୋଟିଏ କୋଣରେ ଘରଡ଼ା ରଚନା କରନ୍ତି ଓ ଜଣେ ବିଜ୍ଞ ବ୍ୟକ୍ତିଙ୍କ ଭାଷାରେ*, ଅତି ଶୀଘ୍ର ସନ୍ତାନୋତ୍ପତ୍ତିରେ ବ୍ୟାପୃତ ହୁଅନ୍ତି ଓ ଦାମ୍ଭିକତା, ଆଡ଼ମ୍ବର ଓ ଲମ୍ପଟ୍ୟକୁ ଜନ୍ମ ଦିଅନ୍ତି—ଏମାନେ ବର୍ଣ୍ଣ-ସଙ୍କର ନୁହନ୍ତି ବରଂ ସର୍ବଥା ସେମାନଙ୍କର ବୈଧ ସନ୍ତାନ । ଧନର ଏହି ସନ୍ତାନମାନଙ୍କୁ ଯଦି ଯୌବନରେ ଉପନୀତ ହେବାକୁ ଛାଡ଼ି ଦିଆଯାଏ ତେବେ ସେମାନେ ଅତି ଶୀଘ୍ର ଆମ ଆତ୍ମାରେ ହିଂସା, ନିୟମହୀନତା ଓ ନିର୍ଲଜ୍ଜତା ଆଦି ନିର୍ଦ୍ଦୟ ଉତ୍ପୀଡ଼ନକାରୀ ପ୍ରଭୂମାନଙ୍କର ବୃଦ୍ଧି ଘଟାନ୍ତି । ମନୁଷ୍ୟ ଯେତେବେଳେ ତା ଅନ୍ତରରେ ଯାହା କିଛି ନଶ୍ୱର ଓ ଅବିବେକୀ ସେଗୁଡ଼ିକର ଉପାସନା କରିବାକୁ ଯାଏ ଓ ଯାହା ଅବିନଶ୍ୱର ତାହାକୁ ମନରେ ପୋଷଣ କରିବାରେ ଅବହେଳା କରେ ସେତେବେଳେ ଏହାହିଁ ତାହାର ଅନିବାର୍ଯ୍ୟ ପରିଣତି । ତାର ଆଉ ଊର୍ଦ୍ଧ୍ୱ ଗତି ହୁଏ ନାହିଁ ; ଯଶଃ ପ୍ରୟାସୀ ହେବାର ସକଳ ଅଭିଳାଷ ସେ ହରାଇ ବସେ । ଏପରି ଜୀବନ ଧୀରେ ଧୀରେ ବିନାଶ ପଥରେ ଅଗ୍ରସର ହୋଇ ଚରମ ବିନାଶ ପ୍ରାପ୍ତ ହୁଏ ; ଆତ୍ମାର ଯାହାକିଛି ମହଦାଂଶ ସେ ସମସ୍ତ ମ୍ଳାନ, ଦର୍ପୂଷିତ ଓ ଘୃଣିତ ହୋଇ ଉଠେ ।

ଜଣେ ବିଗୃରକ ଯଦି ଥରେ ଉତ୍କୋଚ ଗ୍ରହଣ କରି ବିଗୃର ଦାନ କରନ୍ତି ତେବେ ସେ କୌଣସି ନ୍ୟାୟସଙ୍ଗତ ଓ ସମ୍ମାନଜନକ ବ୍ୟାପାର ସମ୍ବନ୍ଧରେ ଆଉ ନିରପେକ୍ଷ ଓ ନିର୍ଦ୍ଦୋଷ ମୀମାଂସା କରି ପାରନ୍ତି ନାହିଁ (କାରଣ ଉତ୍କୋଚ ଗ୍ରହଣକାରୀ ବ୍ୟକ୍ତି ସମ୍ମାନ ଓ ନ୍ୟାୟକୁ ଆତ୍ମସ୍ୱାର୍ଥ ଦୃଷ୍ଟିରୁ ପରିମାପ କରନ୍ତି) । ଯେତେବେଳେ ଆମ ଭିତରେ ଥିବା ପ୍ରତ୍ୟେକ ବ୍ୟକ୍ତିର ସମଗ୍ର ଜୀବନ ଉତ୍କୋଚ ଦ୍ୱାରା ନିୟନ୍ତ୍ରିତ, ଯେତେବେଳେ ଆମେ

*Plato, Republic.

ଅନ୍ୟମାନଙ୍କର ମୃତ୍ୟୁକୁ ଅପେକ୍ଷା କରି ବସି ରହନ୍ତି ଓ ସେମାନଙ୍କର ଉତ୍ତରାଧି-କାରତ୍ୱ ଲାଭ କରିବା ପାଇଁ ଷଡ଼ଯନ୍ତ୍ରରେ ଲିପ୍ତ ହୋଇଥାନ୍ତି, ଯେତେବେଳେ ଆମ ଭିତରୁ ପ୍ରତ୍ୟେକ ବ୍ୟକ୍ତି ଲୋଭର ଦାସ ହେବା ହେତୁ ଆତ୍ମାର ମୂଲ୍ୟ ବିନିମୟରେ, ଯେ କୌଣସି ଉପାୟରେ ହେଲେ ମଧ୍ୟ, ଲାଭାନ୍ୱିତ ହେବାକୁ ଚାହେଁ, ସେତେବେଳେ ମୁଁ ପଚାରିବାକୁ ଚାହେଁ ଯେ, ଏହିପରି ଘୋର ନୈତିକ ମହାମାରୀଗ୍ରସ୍ତ ଯୁଗରେ ଆମେ କିପରି ଆଶା କରିବା ଯେ ସର୍ବକାଳରେ ଜୀବନ୍ତ ରହିଥିବା ମହାନ୍ ରଚନା ସମ୍ବନ୍ଧରେ କେହି ଜଣେ ଉଦାର ଓ ନିରପେକ୍ଷ ସମାଲୋଚକ ତିଷ୍ଠି ରହି ପାରିବେ ? ଏହା କ'ଣ ସତ୍ୟ ନୁହେଁ ଯେ ସବୁ ଲୋକେ ନିଜ ନିଜର ନିଷ୍ପତ୍ତିରେ ଲାଭ ଲୋଭ ଦ୍ୱାରା ପ୍ରଭାବିତ ହୋଇଥାନ୍ତି ? ହାୟ ! ମୋର ଆଶଙ୍କା ହୁଏ ଯେ, ଆମ ଭଳି ଲୋକେ ସ୍ୱାଧୀନ ହେବା ଅପେକ୍ଷା ଦାସ ହେବାହିଁ ଶ୍ରେୟସ୍କର । ଯଦି ଆମର ବାସନାବଳୀକୁ ପିଞ୍ଜରମୁକ୍ତ ବନ୍ୟ ପଶୁ ଭଳି ଆମର ପ୍ରତିବେଶୀମାନଙ୍କ ଉଦ୍ଦେଶ୍ୟରେ ସମ୍ପୂର୍ଣ୍ଣରୂପେ ଛାଡ଼ି ଦିଆଯାଏ ତେବେ ତାହା ସମଗ୍ର ସଭ୍ୟ ଜଗତ ଉପରେ ଦୁର୍ବିପାକର ପ୍ରଳୟ ସୃଷ୍ଟି କରିବ ।”

ମୁଁ ସଂକ୍ଷେପତଃ ଏହିପରି ଅଭିମତ ଦେଇ ମୋର ବକ୍ତବ୍ୟ ସାଙ୍ଗ କରିଥିଲି – ଆମ ସମୟର ପ୍ରତିଭାର ଅପଚୟ ଘଟୁଛି କେବଳ ଆତ୍ମ ଶୂନ୍ୟତା ଯୋଗୁଁ, ଯାହା କେତେକଙ୍କୁ ଛାଡ଼ିଦେଲେ ଅଧିକାଂଶ ବ୍ୟକ୍ତିଙ୍କ ଜୀବନରେ ଦେଖିବାକୁ ମିଳେ । କାରଣ ଆମେ ପ୍ରଶଂସା ବା ବିଷୟ-ସୁଖ ବ୍ୟତୀତ ଅନ୍ୟ କୌଣସି ଉଦ୍ଦେଶ୍ୟରେ ନିଜକୁ କର୍ମରେ ବ୍ୟାପୃତ ରଖୁ ନାହିଁ । ଯାହା ଆମ ପ୍ରୟାସର ଉପଯୁକ୍ତ ଓ ସମ୍ମାନଜନକ ହେବ ସେପରି ପ୍ରକୃତ ହିତ ନିମନ୍ତେ ଆମେ ଉଦ୍ୟମ କରି ନଥାଉଁ ।

ଯାହାହେଉ, ଏ ବିଷୟ ଏଇଟି ଅସମାହିତ ରଖି ପରବର୍ତ୍ତୀ ବିଷୟ ପ୍ରତି ଆମର ଧ୍ୟାନ ଦେବା ଉଚିତ । ତାହା ଆବେଗ-ସମ୍ପର୍କିତ ବିଷୟ ଓ

ଏ ବିଷୟରେ ଏକ ସ୍ୱତନ୍ତ୍ର ଗ୍ରନ୍ଥ ପ୍ରଣୟନ କରିବା ପାଇଁ ମୁଁ ଏହି ନିବନ୍ଧର ପ୍ରାରମ୍ଭରେ ପ୍ରତିଶ୍ରୁତିବଦ୍ଧ ହୋଇଥିଲି । ସାଧାରଣତଃ ସାହିତ୍ୟ-ବିବେଚନରେ, ବିଶେଷତଃ ଔଦାତ୍ତ୍ୟ ସମ୍ପର୍କରେ ଆବେଗର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ।

□ □ □

# ଶୁଦ୍ଧିପତ୍ର

ଭୂମିକା—

| ପୃଷ୍ଠା | ଧାଡ଼ି | ଅଛି | ହେବ |
|---|---|---|---|
| ୩ | ୨୪ | ଅଦ୍‌ଭୂତ | ଅଦ୍‌ଭୁତ |
| ୧୨ | ୨୪ | ପୁନରୁତ୍‌ଥାତ | ପୁନରୁତ୍‌ଥାପିତ |
| ୧୪ | ୨୩ | ଗ୍ରାହ୍ମିକା | ଗ୍ରାହ୍ଵିକା |
| ୧୮ | ୧୯ | ପ୍ରୟୋଗପର | ପ୍ରୟୋଗରେ |

ଅନୁବାଦ—

| | | | |
|---|---|---|---|
| ୧ | ୨ | ଔଦାତ୍ୟ | ଔଦାତ୍ତ୍ୟ |
| ୧ | ୧୩ | ଔଦାତ୍ୟ | ଔଦାତ୍ତ୍ୟ |
| ୨ | ୧୩ | ଅପ୍ରତିବୋଧ | ଅପ୍ରତିରୋଧ |
| ୩ | ୧୦ | ଉନ୍ନତର | ଉନ୍ନତତର |
| ୪ | ୭ | ଘ୍ରାଷଣଂବୋଧ | ଘ୍ରାଷଣବୋଧ |
| ୮ | ୧୩ | ଉପବଷ୍ଟ | ଉପଦ୍ରଷ୍ଟ |
| ୧୨ | ୪ | ସଦୁ | ସବୁ |
| ୧୨ | ୮ | ଉଚ୍ଚାକାଂକ୍ଷ | ଉଚ୍ଚାକାଂକ୍ଷା |
| ୨୩ | ୨୨ | ରୂଦ୍ଧଶ୍ୱାସ୍ | ରୁଦ୍ଧଶ୍ୱାସ |
| ୨୪ | ୨୪ | ସ୍ମୂର୍ତ୍ତି | ସ୍ଫୂର୍ତ୍ତି |
| ୨୭ | ୯ | ପ୍ରତିସ୍ପର୍ଧୀ | ପ୍ରତିସ୍ପର୍ଦ୍ଧୀ |
| ୨୯ | ୧୨ | ନିଗମନ | ନିର୍ଗମନ |
| ୩୩ | ୨୦ | କବରସମ | ଝବରସମ |
| ୩୪ | ୬ | ଆମ୍ର | ଆମ୍ରା |
| ୩୪ | ୧୪ | ଲୈହାଚ୍ଛାଦତ | ଲୌହାଚ୍ଛାଦତ |
| ୩୮ | ୧ | ସାଙ୍ଗୋପାଙ୍ଗୋ | ସାଙ୍ଗୋପାଙ୍ଗ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୪୬ | ୪ | ଅଷ୍ଟର୍ତ୍ତି | ଅଷ୍ଟମୂର୍ତ୍ତି |
| ୪୭ | ୩ | ବଶିଷ୍ଟ | ବଶିଷ୍ଠ |
| ୪୯ | ୧୦ | ପ୍ରତିଷିତ | ପ୍ରତିଷ୍ଠିତ |
| ୪୯ | ୧୮ | ଦାରା | ଦ୍ୱାରା |
| ୫୨ | ୫ | ଧ୍ୱନାତ୍ମକ | ଧ୍ୱନ୍ୟାତ୍ମକ |
| ୫୫ | ୧ | କାଳକ୍ଷେପଣ ନ କରିବାକୁ | କାଳକ୍ଷେପଣ କରିବାକୁ |
| ୫୫ | ୨୧ | ଦାରା | ଦ୍ୱାରା |
| ୫୬ | ୧୮ | ଝିତକୃତ | ଝଙ୍କୃତ |
| ୫୭ | ୧୯ | ଅନୁକରଣୀୟ | ଅନନୁକରଣୀୟ |
| ୬୧ | ୧୩ | କଲ୍ଲାଙ୍କର | ବଲ୍ଲାଙ୍କର |
| ୬୪ | ୧୧ | ଆତ୍ମସଂଜମୀ | ଆତ୍ମସଂଯମୀ |
| ୬୮ | ୧୫ | ବାଗ୍ୱିତାପୂର୍ଣ୍ଣ | ବାଗ୍ମିତାପୂର୍ଣ୍ଣ |
| ୬୯ | ୭ | ଗୁରୁଙ୍କର ଥୁସିଦ୍ଧଦେସ୍ | ଗୁରୁଙ୍କର (ଥୁସିଦ୍ଧଦେସ୍) |
| ୭୬ | ୧୩ | ବଂଶୀଧ୍ୱନ୍ନ | ବଂଶୀଧ୍ୱନ |
| ୮୧ | ୨ | ଷର୍ଣ୍ଣ | ଷଣ୍ଡ |
| ୮୨ | ୧୮ | ଝଡ଼ | ଝଡ଼ |
| ୮୫ | ୧୬ | ଆସର | ଆମର |
| ୮୫ | ୨୪ | ପ୍ରତିଷାରେ | ପ୍ରତିଷ୍ଠାରେ |
| ୮୬ | ୧୫ | ବିନାସ | ବିନାଶ |
| ୮୮ | ୧୯ | ଆମେ ପ୍ରୟାସର | ଆମ ପ୍ରୟାସର |

